ପ୍ରକାଶକ
ଓଡ଼ିଶା ସାହିତ୍ୟ ଏକାଡେମୀ
ନୂଆ ରାଜଧାନୀ,
ଭୁବନେଶ୍ୱର

ପ୍ରଥମ ମୁଦ୍ରଣ ୧୮୬୮
ଦ୍ୱିତୀୟ ମୁଦ୍ରଣ ୧୮୯୭
ତୃତୀୟ ମୁଦ୍ରଣ ୧୯୫୯

ମୂଲ୍ୟ ଏକଟଙ୍କା ପଚିଶ ନୂ: ପ:

ମୁଦ୍ରାକର
ପଣ୍ଡିତ ଭୁବନେଶ୍ୱର ମିଶ୍ର
ପ୍ରଗତି ପ୍ରେସ
କଟକ-୨

# ଭୂମିକା

'ଗୋପୀନାଥ ବଲ୍ଲଭ'ର ପରମ ସୌଭାଗ୍ୟ ଯେ, ଓଡ଼ିଆ ନାଟ୍ୟ ସାହିତ୍ୟର ବିକାଶ ନିର୍ଦ୍ଦେଶରେ ଏହା ସର୍ବଥା ଉଲ୍ଲେଖ ଯୋଗ୍ୟ । ରାମଶଙ୍କର ରାୟ ଯଦ୍ୟପି ପ୍ରଥମ ପୂର୍ଣ୍ଣାଙ୍ଗ ନାଟକର ଲେଖକ ରୂପେ ଚିର ସ୍ମରଣୀୟ, ତଥାପି ତାଙ୍କର ପୂର୍ବଜରୂପେ ଓ ନାଟ୍ୟ ସାହିତ୍ୟର ଜଣେ ବରେଣ୍ୟ ସ୍ରଷ୍ଟା ରୂପେ ସ୍ୱର୍ଗତ ରଘୁନାଥ ପରିଚ୍ଛା ଅଳ୍ପ ସ୍ମରଣୀୟ ଓ ସମ୍ମାନାସ୍ପଦ ନୁହନ୍ତି । ପାରଳାଖେମଣ୍ଡିରେ ୧୭୯୫ ଖ୍ରୀଷ୍ଟାବ୍ଦରେ ତାଙ୍କର ଜନ୍ମ । ଚନ୍ଦ୍ରଶେଖର ପରିଚ୍ଛା ଓ ହୀରାମଣି ଯଥାକ୍ରମେ ତାଙ୍କର ଜନକ ଓ ଜନନୀ । ତାଙ୍କର ପ୍ରକୃତ ଉପନାମ ବା ସଂଜ୍ଞା ଥିଲା 'ପଣ୍ଡା', କିନ୍ତୁ ପରେ ପୂର୍ବପୁରୁଷଙ୍କ (କର୍ମ କ୍ଷେତ୍ରର ଅନୁରୂପ) ରାଜଦତ୍ତ ଉପାଧିରେ ଭୂଷିତ ହୋଇ, 'ପଣ୍ଡା' ପରିବର୍ତ୍ତେ 'ପରିଚ୍ଛା' ରୂପେ ସେ ହେଲେ ପରିଚିତ । ପାରଳାର ଅଦୂରବର୍ତ୍ତୀ ଲିହୁରି ଗ୍ରାମରେ, ଶ୍ରୀ ଗୋପୀନାଥ ମହାପ୍ରଭୁଙ୍କ ମନ୍ଦିରରେ ତାଙ୍କର କୌଣସି ପୂର୍ବ ପୁରୁଷ ରାଜ ନିଯୋଗରେ ଯୋଗ୍ୟତା ପ୍ରଦର୍ଶନ କରି ଏ ଉପାଧି ଲାଭ କରିଥିବାର ଜଣାଯାଏ ।

କବିଙ୍କର ପୂର୍ଣ୍ଣାଙ୍ଗ ଜୀବନ ଚରିତ ବର୍ତ୍ତମାନ ଏକାନ୍ତ ଦୁଷ୍ପ୍ରାପ୍ୟ । ତେବେ ତାଙ୍କର ବଂଶଧରମାନଙ୍କଠାରୁ ପରମ୍ପରାରେ ଶ୍ରୁତ ଓ ଉଜ୍ଜୀବିତ ଗୋଟିଏ ଦୁଇଟି ଘଟଣା ଏଠାରେ ଉଲ୍ଲେଖ କରାଯାଇ ପାରେ । ତନ୍ମଧ୍ୟରୁ ଗୋଟିଏ ହେଉଛି, ଶ୍ରୀ କ୍ଷେତ୍ରରେ, ବିଶେଷରେ ମୁକ୍ତି ମଣ୍ଡପ ସଭାର ପଣ୍ଡିତମଣ୍ଡଳୀରେ ସେ ନିଜର ପ୍ରତିଭା ଓ ପାଣ୍ଡିତ୍ୟର ପରିଚୟ ଦେଇ 'ଅଖଣ୍ଡ ପ୍ରତିଷ୍ଠା ଲାଭ କରିଥିଲେ । କଟକ ନଗରୀରେ ମଧ୍ୟ ମହାତ୍ମା ଗୌରୀଶଙ୍କର ତାଙ୍କୁ ଏକ ମାନ ପତ୍ରରେ ଅଭ୍ୟର୍ଥିତ କରିଥିଲେ । ବ୍ରହ୍ମପୁରରେ, ଲିହୁରିରେ ଅବସ୍ଥାନ

ସମୟରେ ଜଣେ ସନ୍ନ୍ୟାସୀଙ୍କ କୃପାବଳରେ 'ନୀଳ ସରସ୍ୱତୀ' ମନ୍ତ୍ରରେ ସେ ସିଦ୍ଧି ଲାଭ କଲେ ଓ କ୍ରମେ ତାଙ୍କର ଅନର୍ଗଳ କବିତ୍ୱ ସ୍ଫୂର୍ତ୍ତି ହେଲା ।

ଏ ସବୁର ସତ୍ୟାସତ୍ୟ ପରୀକ୍ଷା କରିବା ଏକ ପ୍ରକାର ନିରର୍ଥକ, କାରଣ 'ପରୀକ୍ଷା' ମହୋଦୟଙ୍କର ଅମର କବିତ୍ୱ, ପ୍ରଗାଢ଼ ପାଣ୍ଡିତ୍ୟ ଓ ବଳିଷ୍ଠ ପ୍ରତିଭାରେ ସନ୍ଦେହ କରିବାର ଅବକାଶ ନାହିଁ । ତାଙ୍କ ରଚିତ 'ରାଧା ମାଧବ ବିଳାସ' ଖଣ୍ଡିକ ପାଠକଲେ ମଧ୍ୟ ତାଙ୍କର ବିଲକ୍ଷଣ ଶକ୍ତି-ବିଳାସର ଯଥେଷ୍ଟ ପରିଚୟ ସହଜରେ ଉପଲବ୍ଧ ହେବ । ଭଞ୍ଜଙ୍କର ଶବ୍ଦ-ପାଣ୍ଡିତ୍ୟ, କବିସୂର୍ଯ୍ୟଙ୍କର ଶବ୍ଦ-ସଂଯୋଜନ ପରିପାଟୀ ଓ ଗୋପାଳକୃଷ୍ଣଙ୍କର ଭକ୍ତି-ତାଦାତ୍ମ୍ୟ—ଏହି ତିନୋଟିର ମଧୁର ସମନ୍ୱୟ 'ଗୋପୀନାଥ ବଲ୍ଲଭ ନାଟକ'ର ରଚୟିତା ରଘୁନାଥଙ୍କଠାରେ ସ୍ପଷ୍ଟ ଲକ୍ଷ୍ୟ କରି ହେବ ।

ରଘୁନାଥ ପରିଚ୍ଛା ଏକାଧାରରେ କବି, ପଣ୍ଡିତ, ଭକ୍ତ ସଙ୍ଗୀତଜ୍ଞ ଓ ବହୁଭାଷାଭିଜ୍ଞ ବ୍ୟକ୍ତି ଥିଲେ । ନାଟ୍ୟ ଶାସ୍ତ୍ରରେ ତାଙ୍କର ପାରଦର୍ଶିତା ଏକ ପ୍ରକାର ଅବିସମ୍ବାଦିତ । ତାଙ୍କର ଗୀତ-ନାଟ୍ୟ ସମୂହ, ଓ 'ଲକ୍ଷଣ ଚନ୍ଦ୍ରୋଦୟ' ଗ୍ରନ୍ଥର ଆଭ୍ୟନ୍ତରୀଣ ପ୍ରମାଣ । ଗୋପୀନାଥ ବଲ୍ଲଭ ନାଟକର ମୂଳରେ ସୂତ୍ରଧାର ମୁଖରେ କବି ଯେଉଁ ସଙ୍ଗୀତ ଶାସ୍ତ୍ର ଓ ନାଟ୍ୟ ନୃତ୍ୟ ତତ୍ତ୍ୱର ବିବରଣ କରିଛନ୍ତି, ତାହା ପାଠକଲେ ନାଟ୍ୟକାରଙ୍କ ପାଣ୍ଡିତ୍ୟ ନିକଟରେ ମସ୍ତକ ସ୍ୱତଃ ଅବନତ ହୋଇପଡ଼େ । ଓଡ଼ିଆ ଗୀତ ସାହିତ୍ୟ, ସଙ୍ଗୀତ ସାହିତ୍ୟ ଓ ନାଟ୍ୟ ସାହିତ୍ୟ ଯାହାଙ୍କଠାରେ ଏତେଦୂର ଋଣୀ, ଯାହାଙ୍କର "କଠିଣ" 'ନାଟ୍ୟକାର ଗଣଗଣନାରମ୍ଭେ' ଅବଶ୍ୟ ପଠିତ ହେବ, ତାଙ୍କର ସେହି ବରେଣ୍ୟ ପ୍ରାଥମିକ ଉଦ୍ୟମର ବଳିଷ୍ଠ ଉଦ୍ଧ

ପୁଣି ଥରେ ଉଦ୍ଭାବିତ କରି, ସେ ସମୟର ଓଡ଼ିଆ କବିର ମନୀଷା ପ୍ରତି ଆଜିର ଆତ୍ମ-ଭୂତ ପରିପୂଣ ପାଠକ ସମାଜର ଦୃଷ୍ଟି ଆକର୍ଷଣ କରାଇବା ଆବଶ୍ୟକ ନୁହେଁ କି ?

ଗୋପୀନାଥ ବଲ୍ଲଭ ନାଟକ ନାନା ଦୃଷ୍ଟିରୁ ପ୍ରଥମ ଓଡ଼ିଆ ନାଟକ ରୂପେ ସମ୍ମାନିତ ହେବାର ଯୋଗ୍ୟ । ୧୮୭୮ ଖ୍ରୀଷ୍ଟାବ୍ଦ ଅପ୍ରେଲ ୨୭ ତାରିଖରେ ସ୍ୱନାମଧନ୍ୟ କର୍ମବୀର ଓ ମାତୃସାହିତ୍ୟ ସମୁନ୍ନତିକାମୀ ଗୌରୀଶଙ୍କର ରାୟ ଏହି ନାଟକଟି ପ୍ରକାଶ କରିଥିଲେ । ମୁଖବନ୍ଧରେ ସେ ଲେଖିଥିଲେ—
"ବର୍ତ୍ତମାନକାଳରେ ଉତ୍କଳ ଦେଶର ଲୋକମାନେ ବିଦ୍ୟା ଓ ବୁଦ୍ଧିର ତଦ୍ରୂପ ବ୍ୟବହାର କରୁ ଅଛନ୍ତି କି ନା ଏକଥାର ପରିଚୟ ଦେବା ନିମନ୍ତେ ଆମ୍ଭେ ଗଞ୍ଜାମ ଜିଲ୍ଲାନ୍ତର୍ଗତ ପାରଳାଖେମଣ୍ଡି ନିବାସୀ କବିଚନ୍ଦ୍ର ରଘୁନାଥ ପରିଛାଙ୍କ କୃତ ଏହି 'ଗୋପୀନାଥ ବଲ୍ଲଭ ନାଟକ' ମୁଦ୍ରିତ କରାଇ ଜନସମାଜରେ ଉପସ୍ଥିତ କରୁଅଛୁ ।"

କର୍ମବୀର ଗୌରୀଶଙ୍କରଙ୍କ ଏହି ମନ୍ତବ୍ୟ ସଙ୍ଗେ ସମସାମୟିକ ଉତ୍କଳର ସାହିତ୍ୟିକ ଓ ସାଂସ୍କୃତିକ ଇତିହାସ ଘନିଷ୍ଠ ଭାବରେ ଜଡ଼ିତ ରହିଛି । ୧୮୦୩ ଖ୍ରୀ: ଅ: ରେ ଏ ଦେଶରେ ବ୍ରିଟିଶ ଶାସନ ପ୍ରବର୍ତ୍ତିତ ହେଲା । ତାହାପରେ ପଡ଼ୋଶୀ ବଙ୍ଗ ତୁଳନାରେ ଉତ୍କଳର ଯୁଗୋଚିତ ଅଗ୍ରଗତି ବା ସାଂସ୍କୃତିକ ପରିପୁଷ୍ଟି ସାଧିତ ହୋଇପାରିଲା ନାହିଁ । ଓଡ଼ିଆ ନାଟକର ଇତିହାସ ଦିଗରୁ ମଧ୍ୟ ଏହି ସମସ୍ତ ଆଲୋଚନା ବିଶେଷ ଉପାଦେୟ । ଓଡ଼ିଆ ନାଟକର ପ୍ରାରମ୍ଭିକ ସ୍ତରର ସ୍ୱରୂପ ନିର୍ଦ୍ଦେଶ କରିବାକୁ ଉଦ୍ୟତ ହୋଇ ଅଧ୍ୟାପକ ଗିରିଜାଶଙ୍କର ରାୟ ସ୍ୱୀୟ 'ଓଡ଼ିଆ ନାଟ୍ୟ କଳା'ରେ ଲେଖିଛନ୍ତି :—

"ଓଡ଼ିଶାର ସାମାଜିକ ଜୀବନରେ ନାନା ଅବସ୍ଥାନ୍ତର ଇଂରେଜ ରାଜତ୍ୱରେ ଘଟିଥିଲା । ଓଡ଼ିଶା ବିଜୟର ପ୍ରଥମ ୩୦।୪୦ ବର୍ଷ ମଧ୍ୟରେ ଅନେକ ଓଡ଼ିଆ ସମ୍ଭ୍ରାନ୍ତ ପରିବାର ସର୍ବସ୍ୱାନ୍ତ ହୋଇଗଲେ ଓ ଓଡ଼ିଶାର ସବୁଆଡ଼େ ସାହିତ୍ୟ ରଚନାର ପ୍ରତିକୂଳ ଆତଙ୍କ ଓ ଆଶଙ୍କା ରାଜତ୍ୱ କରୁଥିଲା ! ଯେଉଁ ଦେଶରେ ସମସ୍ତେ ଖିନ୍ନ ସ୍ତ ସେଠାରେ ଆମୋଦ, ଆହ୍ଲାଦର ଅବସର କିପରି ଥାଇ ପାରେ ? ପୁଣି ଇଂରେଜ ରାଜତ୍ୱର ଆରମ୍ଭରୁ ବଙ୍ଗଦେଶୀୟ ନବାଗତ ବହୁ ବ୍ୟକ୍ତି ରାଜ କାର୍ଯ୍ୟ ଉପଲକ୍ଷରେ, ଓଡ଼ିଶାର ନାନା ସ୍ଥାନରେ, ନାନା ବିଭାଗର ଶୀର୍ଷ ସ୍ଥଳରେ ଅବସ୍ଥାପିତ ହୋଇଥିଲେ । ଓଡ଼ିଶା ପ୍ରତି ଏମାନଙ୍କର କିଛି ସହାନଭୂତି ନଥିଲା ଓ ଓଡ଼ିଶାରେ ବଙ୍ଗଳାଭାଷା ପ୍ରଚଳନ କରିବା ଉଦ୍ଦେଶ୍ୟରେ ଏମାନଙ୍କ ମଧ୍ୟରୁ କେତେକେ ନାନା ଭାବରେ ଚେଷ୍ଟାକରିଥିଲେ ଏବଂ ଓଡ଼ିଆ ସାହିତ୍ୟ ପ୍ରତି ଘୋର ଅବଜ୍ଞା ମଧ୍ୟ ପ୍ରକାଶ କରୁଥିଲେ × × । ବଙ୍ଗଦେଶୀୟ ବ୍ୟକ୍ତିମାନଙ୍କ ମଧ୍ୟରେ ମଜଲିସ୍ ପ୍ରଭୃତି ପ୍ରଚଳନ ଥିବାରୁ ସ୍ଥାନେ ସ୍ଥାନେ ବଙ୍ଗଦେଶୀୟ ଯାତ୍ରା ସମୟ ସମୟରେ ଦେଖାଯାଉଥିଲେ ହେଁ ଓଡ଼ିଆ ଯାତ୍ରା କୁରୁଚିପୂର୍ଣ୍ଣ ବୋଲି ସର୍ବଥା ଉପେକ୍ଷିତ ହେଉଥିଲା ।" ( ପୃ. ୩୧ )

ଏହି ପୃଷ୍ଠ ଭୂମିକାରେ ଦାଣ୍ଡାୟମାନ ହୋଇ ରଘୁନାଥ ପରିଚ୍ଛାଙ୍କର କୃତିତ୍ୱର କଳନା କରିବାକୁ ହେବ । ଏକପକ୍ଷରେ ବଙ୍ଗଳା, ଅନ୍ୟପକ୍ଷରେ ଆନ୍ଧ୍ର—ଏ ଦୁଇ ପଡ଼ୋଶୀ ପ୍ରଦେଶ ସଙ୍ଗେ ଓଡ଼ିଶାର ଯୁଗେ ଯୁଗେ ସାଂସ୍କୃତିକ ଆଦାନ ପ୍ରଦାନ ଲାଗିରହିଛି । ସୁତରାଂ କେଉଁଠାରେ ଅସ୍ତିଦିଗରୁ, କେଉଁଠାରେ ଅବା ନାସ୍ତି-ଦିଗରୁ ପଡ଼ୋଶୀ ସାହିତ୍ୟସ୍ରଷ୍ଟା ଓ ସାହିତ୍ୟ ସମାଲୋଚକଙ୍କ ଦ୍ୱାରା

ଓଡ଼ିଶାର ସାହିତ୍ୟିକମାନେ ପ୍ରେରିତ ଓ ପ୍ରଣୋଦିତ ହେବାରେ କୌଣସି ବିଚିତ୍ରତା କିମ୍ବା ଅସ୍ୱାଭାବିକତା ନାହିଁ । କହିବାକୁ ଗଲେ, ବିଗତ ଶତାବ୍ଦୀର ମଧ୍ୟଭାଗରେ କେବଳ ଯେ ୧୮୬୬ ର ନଅଙ୍କ ଦୁର୍ଭିକ୍ଷ ପରି ଭୀଷଣ ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଶାକୁ ଗ୍ରାସ କରିଥିଲା ତାହା ନୁହେଁ, ଦୁଇ ଦିଗରୁ ପ୍ରତି-ସ୍ପର୍ଦ୍ଧାଶୀଳ ସାହିତ୍ୟିକ ଆକ୍ରମଣ ମଧ୍ୟ ଉତ୍କଳକୁ ଅଳ୍ପ ମ୍ରିୟମାଣ କରିଦେଇ ନଥିଲା ।

ଓଡ଼ିଆ ଗଦ୍ୟ ସାହିତ୍ୟର ସେନାପତି, ସେନାପତି ଫକୀର ମୋହନ ଖୁବ୍ ଉତ୍ତର କୋଣରୁ ଓଡ଼ିଆ ଭାଷା ଓ ସାହିତ୍ୟ ବିରୁଦ୍ଧରେ ଚାଲି-ଥିବା ଅପପ୍ରଚେଷ୍ଟାର ବିବରଣୀ ନିଜ 'ଆତ୍ମ ଜୀବନୀ'ରେ ଓ କେତେକ ଆଲୋଚନାରେ ମଧ୍ୟ ଲିପିବଦ୍ଧ କରିଛନ୍ତି । ସେତେବେଳର ସେହି ଶ୍ରେମାଞ୍ଚକର ପରିସ୍ଥିତି ବର୍ଣ୍ଣନା କରି ଠାଏ ଲେଖିଛନ୍ତି, "ଆମ୍ଭମାନଙ୍କୁ ଦାରୁଣ ଦୁଃଖର ସହିତ ଗୋଟିଏ କଥା ଲେଖିବାକୁ ହେଉଅଛି; ବର୍ତ୍ତମାନ ସାନ ଲାଟ ଶ୍ରୀ ଯୁକ୍ତ ଉଡ଼ବରନ ସାହେବ ଉତ୍କଳ ଭାଷା ମୁଣ୍ଡ ଚେକିବା ବେଳରେ ଠେଙ୍ଗାଏ କଷି ଦେଇଗଲେ । ଉକ୍ତ ମହାଶୟ ସମ୍ବଲପୁର ଅଦାଲତ-ମାନଙ୍କଠାରୁ ଉତ୍କଳ ଭାଷା ଉଠାଇ ଦେଇ ଯେଉଁ କ୍ଷତି କରିଗଲେ, ସେ କ୍ଷତି ସହଜରେ ପୂର୍ତ୍ତି ହେବାର ନୁହେଁ, ଉତ୍କଳ ବାସୀମାନେ ଚିରକାଳ ଏକଥା ସ୍ମରଣ କରି ଦୀର୍ଘ ନିଃଶ୍ୱାସ ପକାଇବେ। " ( ଗ୍ରଃ ପୃଃ ୧୦୪୯ )

ଅନ୍ୟ ପକ୍ଷରେ ଦକ୍ଷିଣର ନମୁନା ମଧ୍ୟ ବିରଳ ନୁହେଁ । ପଣ୍ଡିତ ଗୋପୀନାଥ ନନ୍ଦ ସ୍ୱକୃତ 'ଜାନକୀ ପରିଣୟ ନାଟକ'ର 'ଭୂମିକାରେ ଏ ସମ୍ପର୍କରେ ୧୯୧୫ 'ଖ୍ରୀଷ୍ଟାବ୍ଦରେ କେତେକ କଥା ଲେଖି ଯାଇଅଛନ୍ତି । ସୁତରାଂ, କି ପରିସ୍ଥିତିରେ 'ଗୋପୀନାଥ ବଲ୍ଲଭ'ନାଟକ ରଚିତ ହୋଇଥିବ ବା ଥିଲା ତାହାର ଅବଧାରଣ ବ୍ୟତିରେକ ନାଟକଟିର ମୂଲ୍ୟ କଳନା ଯଥାର୍ଥରେ ହୋଇ ପାରିବ ନାହିଁ ।

ଅଧ୍ୟାପକ ଗିରିଜାଶଙ୍କର ରାୟ ଓଡ଼ିଆ ନାଟକର ବିକାଶ କ୍ରମ ନିର୍ଦ୍ଦେଶ କଲାବେଳେ ଠାଏ ଲେଖିଛନ୍ତି, କବିସୂର୍ଯ୍ୟଙ୍କ 'ଚମ୍ପୂ' ଓଡ଼ିଆ ନାଟକର ପ୍ରାଥମିକ ଅବସ୍ଥାର ଦ୍ୟୋତକରୂପେ ଗ୍ରହଣ କରାଯାଇ ପାରେ (ଓ: ନା: ପୃ: ୨୪)। ପୁଣି ଅନ୍ୟତ୍ର ମଧ୍ୟ ଓଡ଼ିଆ ଯାତ୍ରାକୁ ଓଡ଼ିଆ ନାଟ୍ୟ ସାହିତ୍ୟର ପୂର୍ବବର୍ତ୍ତୀ ଅବସ୍ଥା ରୂପେ ନିର୍ଦ୍ଦେଶ କରିଛନ୍ତି (ଓ: ନା: ପୃ: ୩୨)। ଓଡ଼ିଆ ଯାତ୍ରା ସମ୍ପର୍କରେ 'ସମ୍ବାଦ ବାହିକା' ଏବଂ 'ଉତ୍କଳ ଦୀପିକା'ର ଖଣ୍ଡନ-ମଣ୍ଡନାତ୍ମକ ବିବରଣୀ ସେ ଉଦ୍ଧାର କରିଛନ୍ତି। ଯେତେବେଳେ ଏଇ ଯାତ୍ରା, ଲୀଳା ଓ ସୁଆଙ୍ଗ ଓଡ଼ିଶାର ସାଂସ୍କୃତିକ ଜୀବନର ବିଶିଷ୍ଟ ଅଙ୍ଗ ଥିଲା, ସେତିକବେଳେ ରଘୁନାଥ ପରିଚ୍ଛା ଗୋପୀନାଥ ବଲ୍ଲଭ ନାଟକ ପ୍ରଣୟନ କରିଥିଲେ। ୧୮୭୮ରେ ଏହା ମୁଦ୍ରିତ ହୋଇଥିବାରୁ ଅବଶ୍ୟ ତାହାର ଅନ୍ତତଃ ଦଶ ପନ୍ଦର ବର୍ଷ ପୂର୍ବରୁ ରଚିତ ହୋଇ ଥିଲା ବୋଲି ଅନୁମାନ କରାଯାଇ ପାରେ। କିନ୍ତୁ ଅଧ୍ୟାପକ ଗିରିଜା-ଶଙ୍କର ରାୟ କାହିଁକି କେଜାଣି ଏ ନାଟକଟି ବିଷୟରେ ଏକାନ୍ତ ନୀରବ। ୧୮୭୬ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରେ ଅନୁଷ୍ଠିତ ହୋଇଥିବା ଓଡ଼ିଆ ଯାତ୍ରାର ଉଲ୍ଲେଖ କରି ସେ ସମ୍ପର୍କରେ ଉତ୍କଳ ଦୀପିକାର ମତାମତ ଉଦ୍ଧାର କରି ତତ୍‌କାଳୀନ ପରିସ୍ଥିତିର ପରିଚୟ ଦେବାକୁ ଯାଇ ଲେଖିଛନ୍ତି—

"ଏହି ସବୁ ଲେଖାରୁ ଓଡ଼ିଶାବାସୀମାନଙ୍କର ରୁଚି ପରିବର୍ତ୍ତନ ଓ ଉଚିତାଙ୍ଗ ଅଭିନୟ ଦେଖିବା ନିମନ୍ତେ ବ୍ୟଗ୍ରତା ସ୍ପଷ୍ଟ ଜଣାପଡ଼ୁ-ଅଛି ଓ ଏଠାରେ ଅନେକ ଲୋକ ବଙ୍ଗ ଦେଶରେ ନାଟକର ଅଭିନୟ ଦେଖିଥିବାରୁ ନାଟକ ରଚନା ଓ ଅଭିନୟ ନିମନ୍ତେ ମନ ବଳାଇବା ସ୍ୱାଭାବିକ × × ଏହି ପରିସ୍ଥିତିରେ ଜଗନ୍‌ମୋହନ ଲାଲ (ଡେପୁଟି) ଖଣ୍ଡିଏ କ୍ଷୁଦ୍ର ନାଟକ ରଚନା କରିଥିଲେ ଓ 'ବାବାଜୀ ନାଟକ' ରୂପେ

ଏହା ମୁଦ୍ରିତ ହୋଇ ପ୍ରକାଶିତ ହୋଇଥିଲା × × × × ବାସ୍ତବରେ ଏହି 'ବାବାଜୀ ନାଟକ' ପ୍ରକୃତ ନାଟକ ନୁହେଁ । କିନ୍ତୁ ଏହା ପାଲା ଅପେକ୍ଷା ଉନ୍ନତ ଓ ସୁରୁଚି ସମ୍ପନ × × । ଏହା ଅତି କ୍ଷୁଦ୍ର ଶିକ୍ଷାପ୍ରଦ ଗୀତି-ନାଟ୍ୟ ଭିନ୍ନ ଆଉ କିଛି ନୁହେଁ ।" (ପୃ: ୩୪) ଅଥଚ ଗୋପୀନାଥ ବଲ୍ଲଭ ନାଟକ ସମ୍ବନ୍ଧରେ କୌଣସି ଆଲୋଚନା କରାଯାଇ ନାହିଁ,--ଏହାର ଅସ୍ତିତ୍ୱ ମଧ୍ୟ ସ୍ୱୀକୃତ ହୋଇ ନାହିଁ ।

ଶ୍ରୀଯୁକ୍ତ ପ୍ରିୟରଞ୍ଜନ ସେନ କିନ୍ତୁ ଓଡ଼ିଆ ନାଟ୍ୟ ସାହିତ୍ୟର ବସ୍ତୁର ପ୍ରସଙ୍ଗରେ ଲେଖିଛନ୍ତି—"The next dramatist of note was Gaganmohan Lala who wrote × × × Babaji. × × × published from Cattack in 1877. × × There was a predecessor even to Jaganmohan viz, Kavichandra Raghunath Pariksha, who in 1868, from Cuttack published a drama Gopinath Ballabha Natak, probably a translation from a Vaishnav play in Sanskrit."

(Modern Oriya Literature pp. 109—110)

ଶ୍ରୀଯୁକ୍ତ ସେନ୍ ୧୯୪୭ରେ ଏହା ଲେଖିଥିଲେ । ଏହା ପରେ ମଧ୍ୟ ଏଥିର ଆଲୋଚନା ଅନ୍ୟତ୍ର ହୋଇଥିଲା । ଦୃଷ୍ଟାନ୍ତ ସ୍ୱରୂପ, ୧୯୫୪ ଡିସେମ୍ବରରେ ପ୍ରକାଶିତ 'ଉତ୍କଳ ନୃତ୍ୟ ସଙ୍ଗୀତ ନାଟ୍ୟ-କଳା' ପରିଷଦର ସ୍ମରଣିକାରେ ଅଛି :—

"Raghunath Parichha and Jaganmohan Lala are two other conspicuous names in the history of dramatic authorship. Shri Parichha's Gopinath Ballabha Natak was published in 1868." (p. 8)

ପୂଣି ଚତୁଃପୂର୍ବବର୍ଷ ୧୯୫୩ ଖ୍ରୀଷ୍ଟାବ୍ଦରେ 'ଡ଼ଗର'ରେ ମଧ୍ୟ ଏକ ଆଲୋଚନାରେ ଗୋପୀନାଥ ବଲ୍ଲଭଙ୍କର ନାମୋଲ୍ଲେଖ ଥିଲା (ଦେଖନ୍ତୁ, ଡ଼ଗର, ୧୬ଶ ବର୍ଷ, ୭ମ ସଂଖ୍ୟା ପୃଃ ୩୩ । )

ଏହା ସତ୍ତ୍ୱେ, ଗିରିଜାବାବୁ ତାଙ୍କ ନାଟ୍ୟ କଳାରେ ଭ୍ରମବଶତଃ ହେଉ, ବା ଅନ୍ୟ କୌଣସି କାରଣରୁ ହେଉ, ଗୋପୀନାଥ ବଲ୍ଲଭ ନାଟକର ନାମ ଉଲ୍ଲେଖ କରି ନ ଥିବାରୁ, ତାଙ୍କର (ବୋଧହୁଏ) ଅନ୍ଧ ଅନୁବର୍ତ୍ତିତାରେ ପରବର୍ତ୍ତୀ ଲେଖକମାନେ ପରିଜ୍ଞାଙ୍କ ନାମ ପର୍ଯ୍ୟନ୍ତ ଉଲ୍ଲେଖ କରି ନାହାନ୍ତି ! ଠିକ୍ ଏହି ଭଳି ପରିସ୍ଥିତିର ଅବସାଦକର ନଗ୍ନ ରୂପ ଦେଖି ପଣ୍ଡିତ ନୀଳକଣ୍ଠ ଠାଏ ଲେଖିଛନ୍ତି —

"ବିଦ୍ୟାର ପରଂପରା ମଧ୍ୟ ଏ ଦେଶରେ ପିଠୁ ନାହିଁ । ଆଲୋଚନା ସୂତ୍ରରେ ପୂର୍ବର ଆଲୋଚ୍ୟ ଓ ସିଦ୍ଧାନ୍ତମାନଙ୍କ ଉପରେ ନୂତନର ପ୍ରତିଷ୍ଠା ହେବା ଉଚିତ । ମୁଁ ବରାବର କହେ, ପରଂପରା ପରିସ୍ଥିତି ଓ ପୁରୋଦୃଷ୍ଟି, ଏହି ତିନୋଟି ଉପାଦାନ ଅବିଚ୍ଛେଦ୍ୟ । ପରଂପରାର ପ୍ରଭାବ ନ ଥିଲେ ପରିସ୍ଥିତିର ନିର୍ମଳ ଅବବୋଧ ହୁଏ ନାହିଁ ।" ( ଫକୀରମୋହନ ଗ୍ରନ୍ଥାବଳୀ, ଭୂମିକା ପୃଃ ୧)

ପଣ୍ଡିତ ନୀଳକଣ୍ଠଙ୍କ ଏହି ମନ୍ତବ୍ୟ ଯେଉଁ ବିଷୟରେ ପ୍ରକାଶ ପାଇଛି, ତାହା ଅଭିନିବେଶ ସହକାରେ ପାଠ କଲେ ବହୁ ଲେଖକଙ୍କର ସ୍ପର୍ଦ୍ଧା ଓ ବିଚାରହୀନତା ସହଜରେ ବୁଝି ହୁଏ । ଓଡ଼ିଶାର ବହୁ ପାଠକଙ୍କର ମନେଥିବ, କିଛିଦିନ ତଳେ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ସାରଳାଦାସଙ୍କର ବାସସ୍ଥାନ ଓ ସମୟ ସମ୍ପର୍କରେ ଯେଉଁ ନୂତନ ମତ ପ୍ରକାଶ କରି ପ୍ରବନ୍ଧ ଲେଖିଥିଲେ, ସେ ସମ୍ପର୍କରେ ଝଙ୍କାରର ସମ୍ପାଦକୀୟରେ ଡକ୍ଟର ହରେକୃଷ୍ଣ ମହତାବ, ପଣ୍ଡିତ ନୀଳକଣ୍ଠ ଦାସଙ୍କ ଭଳି ମନ୍ତବ୍ୟ ଦେଇ ଲେଖିଥିଲେ—

"ଖଣ୍ଡିଏ ତାଳପତ୍ର ପୋଥିରୁ କୌଣସି ସିଦ୍ଧାନ୍ତରେ ପହଞ୍ଚିବା ଉଚିତ ନୁହେ । ବହୁ ପ୍ରାସଙ୍ଗିକ ବିଷୟର ଅନୁସନ୍ଧାନ ଆବଶ୍ୟକ × × । ସାରଳା ଦାସଙ୍କ ସମ୍ବନ୍ଧରେ ଏଥିପୂର୍ବେ ଯେଉଁସବୁ ଲେଖା ବାହାରିଛି, ସେ ସବୁ ଶ୍ରୀ ଗୋପୀନାଥ ମହାନ୍ତି ଅଧ୍ୟୟନ କରିବେ ବୋଲି ଆଶା କରୁ × × । ଗବେଷଣା ପାଇଁ ପୂର୍ବ ଲେଖକମାନଙ୍କ ଅଧ୍ୟୟନ ଆବଶ୍ୟକ ।" ( ଝଙ୍କାର ୮ମ ବର୍ଷ ୩ୟ ସଂଖ୍ୟା ପୃ: ୩୪୬ )

ପଣ୍ଡିତ ନୀଳକଣ୍ଠ ଓ ଡକ୍ଟର୍ ମହତାବଙ୍କ ଉଦ୍ଧୃତ ମନ୍ତବ୍ୟ ପ୍ରତି ଦୃଷ୍ଟି ଦେଇ ବିଶିଷ୍ଟ ଔପନ୍ୟାସିକ ଶ୍ରୀଯୁକ୍ତ କାଳନ୍ଦୀଚରଣ ପାଣିଗ୍ରାହୀଙ୍କର ଏ ସମ୍ବନ୍ଧରେ ଗୋଟିଏ ମତ ଆଲୋଚନା କରାଯାଉ ।

"Pandit Godavarish Misra is both poet and playwright. × × × Oriya drama, however, was of a later orign than fiction owing to the want of any permanent stage. At the beginning it took the form of mythological presentation dealing with stories like the romance of Radha and Krishna. Raja Radhamohan Rajendra Dev and Ramashankar Ray attempted in this direction with but little success on the stage. They were followed by Kampala Misra."

( Literatures in Indian Languages, p. 242 )

ଭାରତ ସରକାରଙ୍କ ପକ୍ଷରୁ ଭାରତୀୟ ବିଭିନ୍ନ ବିଶିଷ୍ଟ ଭାଷାର ସାହିତ୍ୟିକ ବିକାଶ ସଂପର୍କୀୟ ବିବରଣୀପୂର୍ଣ୍ଣ ଏକ ଗ୍ରନ୍ଥରେ ଓଡ଼ିଆ ନାଟକର ଏ ଯେଉଁ କ୍ରମିକତା ଓ ନାଟ୍ୟକାରଙ୍କ ପରିଚୟ ପ୍ରଦତ୍ତ ହୋଇଅଛି, ତାହା ଦେଖିଲେ ପଣ୍ଡିତ ନୀଳକଣ୍ଠ ଓ ଡକ୍ଟର୍

ମହତାବଙ୍କ ମନ୍ତବ୍ୟର ମୂଲ୍ୟ ଓ ମହତ୍ତ୍ୱ ସହଜରେ ବୁଝିହେବ । କାରଣ କାଳନ୍ଦୀବାବୁଙ୍କ ଲେଖାଟିରେ ଓଡ଼ିଶାର ବିଭିନ୍ନ ସାହିତ୍ୟ ସ୍ରଷ୍ଟାମାନଙ୍କର ସମସ୍ତ ଓ ପ୍ରତିଷ୍ଠାକ୍ରମେ ଆଲୋଚନା କରାଯାଇଛି । କିନ୍ତୁ ତାଙ୍କ ଲେଖାରୁ ଜଣାଯାଏ, ଯେପରିକି ଗୋଦାବରୀଶ ମିଶ୍ର ଓଡ଼ିଶାର ପ୍ରଥମ ଶ୍ରେଷ୍ଠ ନାଟ୍ୟକାର, ତାଙ୍କ ପରେ ରାଧାମୋହନ ରାଜେନ୍ଦ୍ର ଓ ରାମଶଙ୍କର ରାୟ, ତାଙ୍କପରେ ଓ ତାଙ୍କର ଅନୁବର୍ତ୍ତୀ ଭାବରେ କାମପାଳ ମିଶ୍ର ନାଟକ ରଚନା କରିଥିଲେ ।

ଓଡ଼ିଆ ନାଟ୍ୟ ସାହିତ୍ୟର ଯେଉଁମାନେ ଆଲୋଚନା କରନ୍ତି ସେମାନେ ଜାଣନ୍ତି ଯେ, ୧୮୮୦ ଖ୍ରୀଷ୍ଟାବ୍ଦରେ 'କାଞ୍ଚି-କାବେରୀ' ନାଟକ ରଚିତ ହେଲା (ଓଡ଼ିଆ ନାଟ୍ୟକଳା ପୃ: ୨୩ ଓ ୪୯) । ଅଥଚ ପାଠକମାନେ ଏଇ ନାଟ୍ୟକାର ଓ ନାଟକମାନଙ୍କର ସମସ୍ତ ପ୍ରତି ଟିକିଏ ଦୃଷ୍ଟି ଦିଅନ୍ତୁ ।

(କ) ୧୮୮୦ ଖ୍ରୀଷ୍ଟାବ୍ଦରେ ରାମଶଙ୍କରଙ୍କର 'କାଞ୍ଚି-କାବେରୀ' ନାଟକ ରଚିତ ହେଲା ।

(ଖ) କାମପାଳ ମିଶ୍ର ରେଭେନ୍ସା କଲେଜରେ ପଢ଼ୁଥିବା ବେଳେ ୧୮୯୮ (ଓଡ଼ିଆ ନାଟ୍ୟକଳା ପୃ: ୫୯) ବା ୧୮୯୯ (Modern Oriya Literature pp. 111—112) ରେ 'ସୀତାବିବାହ' ନାଟକ ରଚନା କରିଥିଲେ ।

(ଗ) ରାଧାମୋହନ ରାଜେନ୍ଦ୍ର ଦେବ ୧୯୧୦ ଖ୍ରୀଷ୍ଟାବ୍ଦରେ ପ୍ରେମ-ତରଙ୍ଗ ନାଟକ ରଚନା କରିଥିଲେ ।

(ଘ) ପଦ୍ମନାଭ ନାରାୟଣ ଦେବ (ପାରଳା) ୧୯୦୧ ଓ ୧୯୦୨ରେ ଯଥାକ୍ରମେ 'ପ୍ରହ୍ଲାଦ ନାଟକ' ଓ 'ଅହଲ୍ୟା ଶାପ ମୋଚନ' ପ୍ରକାଶ କରିଥିଲେ (Modern Oriya Literature pp. 111—112) ।

ଏଥିରୁ ଦେଖାଯାଏ କାମପାଳ ମିଶ୍ର ବୃଦ୍ଧାବସ୍ଥାରେ ପ୍ରଥମ ନାଟକ ଲେଖିବାର ଅନେକ ବର୍ଷ ପରେ ଚକଡି ରାଜା ରାଧାମୋହନ ରାଜେନ୍ଦ୍ର ଦେବ ନାଟକ ରଚନା କରିଥିଲେ ଏବଂ ରାମଶଙ୍କର ନାଟ୍ୟକାର ହିସାବରେ ଏ ଦୁହିଁଙ୍କର ଯଥେଷ୍ଟ ପୂର୍ବବର୍ତ୍ତୀ। ଅଥଚ କାଳିନ୍ଦୀବାବୁଙ୍କ ସୁଚିନ୍ତିତ ପ୍ରବନ୍ଧରେ ଅଛି ଯେ, କାମପାଳ ମିଶ୍ର ରାଧାମୋହନ ରାଜେନ୍ଦ୍ରଙ୍କର ପଦାଙ୍କ ଅନୁସରଣ କରି ନାଟକ ରଚନା କରିଥିଲେ ଏବଂ ସର୍ବୋପରି, ଓଡ଼ିଆ ନାଟ୍ୟ ସାହିତ୍ୟର ନିର୍ଦ୍ଦେଶ ପ୍ରସଙ୍ଗରେ ରାମଶଙ୍କରଙ୍କୁ 'ଗୋଦାବରୀଶ' ଓ ଚକଡି ରାଜାଙ୍କ ପରେ ସ୍ଥାନ ଦିଆଯାଇଛି।

ଏହି ଗୋଟିକ ନୁହେଁ, କେବଳ ନାଟ୍ୟ-ସାହିତ୍ୟ ସମ୍ପର୍କରେ ଆଲୋଚନା କଲେ ଏ ଭଳି ଅନେକ ଦୃଷ୍ଟାନ୍ତ ଆଖିରେ ପଡ଼ିବ। ଅଧ୍ୟାପକ କାହ୍ନୁଚରଣ ମିଶ୍ର ସୁପ୍ରଣୀତ 'ସାହିତ୍ୟ ସମୀକ୍ଷା'ରେ ଏହିପରି କେତେକ ଭ୍ରାନ୍ତ କଥା ଲେଖି ଯାଇଛନ୍ତି। ପ୍ରଥମ କଥା, ଅଧ୍ୟାପକ ଗିରିଜାଶଙ୍କର ରାୟଙ୍କ ପରି ରାମଶଙ୍କରଙ୍କ କାଞ୍ଚି-କାବେରୀ ନାଟକ ଓଡ଼ିଶାର ପ୍ରଥମ ପୂର୍ଣ୍ଣାଙ୍ଗ ନାଟକ ବୋଲି ସେ ଗ୍ରହଣ କରି ନାହାନ୍ତି। କିନ୍ତୁ ଲେଖିଛନ୍ତି—

"ସ୍ୱର୍ଗୀୟ ରାମଶଙ୍କର ରାୟଙ୍କର 'କାଞ୍ଚି-କାବେରୀ ନାଟକ' ରଚିତ ହେଲା ବେଳକୁ ପଦ୍ମନାଭ ଦେବଙ୍କ 'ପ୍ରହ୍ଲାଦ ନାଟକ' ମଧ୍ୟ ରଚିତ ହୋଇଥିଲା।" ( ସାହିତ୍ୟ ସମୀକ୍ଷା ପୃ: ୭୫ )

ଏକଥା ଜଣାଶୁଣା ଯେ, ରାମଶଙ୍କରଙ୍କ ଉକ୍ତ ନାଟକ ୧୮୮୦ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିଲା। ପୁଣି ପ୍ରିୟରଞ୍ଜନଙ୍କ ଲେଖାରୁ ଜଣାଯାଏ ଯେ, ୧୮୮୦ ବେଳକୁ ପଦ୍ମନାଭ ଦେବଙ୍କ ବୟସ ମାତ୍ର ଆଠ ବର୍ଷ (ଦେଖନ୍ତୁ, Modern Oriya Literature p. 111)। କାରଣ ସେ ୧୮୭୨ ଡିସେମ୍ବର ୧୫ରେ ଜନ୍ମ ହୋଇଥିଲେ।

ତେବେ କ'ଣ ବୁଝିବାକୁ ହେବ ଯେ, ଆଠ ବର୍ଷ ବୟସରେ ପଦ୍ମନାଭ ତାଙ୍କର 'ପ୍ରହ୍ଲାଦ ନାଟକ' ରଚନା କରିଥିଲେ ? ସୁତରାଂ ଏହା ଏକ ଗୁରୁତର ପ୍ରମାଦରୂପେ ପରିତ୍ୟାଜ୍ୟ ।

ମୋର ପ୍ରିୟ ଛାତ୍ର ଶ୍ରୀମାନ୍ ପଠାଣି ପଟ୍ଟନାୟକ ସ୍ୱପ୍ରଣୀତ 'ଓଡ଼ିଆ ସାହିତ୍ୟର ଭୂମିକା'ରେ ୧୯୫୭ରେ ଓଡ଼ିଆ ନାଟ୍ୟ ସାହିତ୍ୟର ଆଦ୍ୟ ସ୍ତରର ଆଲୋଚନା କଲାବେଳେ କେବଳ ଗିରିଜାବାବୁଙ୍କର ପଦାଙ୍କ ଅନୁସରଣ କରିଛନ୍ତି ମାତ୍ର । ( ଦେଖନ୍ତୁ, ଓଡ଼ିଆ ସାହିତ୍ୟର ଭୂମିକା ପୃ: ୨୮ । )

## ପ୍ରଥମ ଓଡ଼ିଆ ନାଟକ—

"ପ୍ରଥମ ଓଡ଼ିଆ ନାଟକ"—ଏହା ଅଧ୍ୟାପକ ଗିରିଜାଶଙ୍କର ରାୟଙ୍କ ପ୍ରଣୀତ 'ଓଡ଼ିଆ ନାଟ୍ୟକଳା' ଗ୍ରନ୍ଥର ତୃତୀୟ ପରିଚ୍ଛେଦର ଶିରୋନାମା । ଏହି ପରିଚ୍ଛେଦର ଆରମ୍ଭରେ ଅଛି—

"ଓଡ଼ିଆରେ ପ୍ରଥମ ନାଟକ ରଚିତ ହେଲା ୧୮୮୦ ମସିହାରେ । ତାହା ପୂର୍ବରେ ଯେଉଁ 'ବାବାଜୀ' ନାଟକ ରଚିତ ହୋଇଥିଲା, ତାହା ବାସ୍ତବରେ ନାଟକ ନୁହେ × × ୧୮୭୮ ମସିହାରେ କଟକ ନଗରୀରେ କେତେକ ଯୁବକଙ୍କ ଉଦ୍ୟମରେ ପ୍ରଥମରେ ରଙ୍ଗମଞ୍ଚ ଗଢ଼ା ହୋଇ ବଙ୍ଗଳା ନାଟକ ଅଭିନୀତ ହୋଇଥିଲା ଓ ଏହି ସମୟରେ ରାମଶଙ୍କର କଲେଜର ଛାତ୍ର ।

( ପୃ: ୩୯ )

ଅଧ୍ୟାପକ କାହ୍ନୁଚରଣ କନ୍ଦର୍ପ ପଦ୍ମାବତୀ ହରଣକୁ ପ୍ରଥମ ନାଟକ ବୋଲି ଧରିଛନ୍ତି । ସେ ଲେଖିଛନ୍ତି—"ଉକ୍ତ ନାଟକଟି ୧୮୩୪ ମସିହାରେ ରଚିତ ଓ ଅଭିନୀତ ହେବାର ପ୍ରମାଣ ମିଳିଅଛି ।

( ସାହିତ୍ୟ ସମୀକ୍ଷା ପୃ: ୭୭ । )

ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ, ଅଧ୍ୟାପକ କାହ୍ନୁଚରଣଙ୍କ ମତରେ ୧୮୩୪ ରେ ଅଭିନୀତ ହୋଇଥିବା 'ପଦ୍ମାବତୀ ହରଣ' ହିଁ ପ୍ରଥମ ଓଡ଼ିଆ ନାଟକ—ଯଦିଓ ଏଭଳି ନୂତନ ସିଦ୍ଧାନ୍ତରେ ସେ କପରି ଉପନୀତ ହେଲେ, ତହିଁର କୌଣସି ପ୍ରମାଣ ସେ ଦେଇ ନାହାନ୍ତି ।

ଏକଥା ଲେଖିବା ପରେ ସେ ପୁଣି ଲେଖିଛନ୍ତି—

"ବୀରକିଶୋର ଦେବଙ୍କ ସମୟରେ ମଧ୍ୟ ଆଉ ଏକ ଓଡ଼ିଆ ନାଟକ ରଚିତ ଓ ଅଭିନୀତ ହୋଇଥିବାର ଇତିହାସ ମିଳୁଅଛି । ଉକ୍ତ ନାଟକର ନାମ 'ଗୌରୀ ହରଣ' ବା ଜଳନ୍ଧର ଉପାଖ୍ୟାନ । × × × । ପ୍ରଥମ ବୀରକିଶୋର ଦେବ ୧୭୩୮ରୁ ୧୭୯୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶାସନ କରିଥିଲେ × × × । ଉକ୍ତ ନାଟକ ସେହି ପ୍ରଥମ ବୀରକିଶୋର ଦେବଙ୍କ ସମୟରେ ହିଁ ରଚିତ ଓ ଅଭିନୀତ ହେବାର ଅନୁମିତ ହୁଏ । ଏବେ ବି ଉକ୍ତ ପାଣ୍ଡୁଲିପିଟି ଅଛି ।" ( ସାହିତ୍ୟ ସମୀକ୍ଷା ପୃ: ୭୧-୭୨ । )

ଅଧ୍ୟାପକ ମିଶ୍ରଙ୍କର ଏଇ ମତ କେତେଦୂର ପ୍ରାମାଣିକ, ତାହା ଜାଣି ହେଉ ନାହିଁ । ତେବେ, ଯୁକ୍ତି ଛଳରେ, ତାଙ୍କ କହିବା ପ୍ରକାରେ ଧରାଯାଉ, ୧୭୯୨ ପୂର୍ବରୁ ବୀରକିଶୋର ଦେବଙ୍କ ଶାସନ କାଳରେ 'ଗୌରୀ ହରଣ' ନାଟକ "ରଚିତ ଓ ଅଭିନୀତ" ହୋଇଥିଲା ।

ଏହା ଯଦି ଠିକ ହୁଏ, ତେବେ ସେ କପରି ଲେଖିଲେ, "ଓଡ଼ିଶାରେ ପ୍ରଥମ ଓଡ଼ିଆ ନାଟକାଭିନୟ ଇତିହାସରେ ପଦ୍ମାବତୀ ହରଣ ହିଁ 'ସ୍ଥାନ ପାଇବ" ବୋଲି । (ସାହିତ୍ୟ ସମୀକ୍ଷା ପୃ: ୭୧ ।) ସୁତରାଂ, ତାଙ୍କର ଗ୍ରନ୍ଥର ଗୋଟିଏ ପୃଷ୍ଠାରେ ଦୁଇଟି ପରସ୍ପର ବିରୁଦ୍ଧ ମତ ପ୍ରକାଶ ପାଇ ଯାଇଛି ।

ପ୍ରଥମ ଓଡ଼ିଆ ନାଟକ ବିଷୟରେ ଆଲୋଚନା କଲାବେଳେ ଆଉ ଦୁଇଟି ଉପାଦାନର ଉଲ୍ଲେଖ ଓ ଆଲୋଚନା ନକରି ରହି ହୁଏ ନାହିଁ ।

ବାବାଜୀ ନାଟକ ମୁଦ୍ରିତ ହେବାପରେ ଉତ୍କଳ ଦୀପିକାରେ ୧୮୭୭ ନଭେମ୍ବର ୩ ତାରିଖ ସଂଖ୍ୟାରେ ଲେଖା ଥିଲା :—

"ଓଡ଼ିଆ ଭାଷାରେ ଏ ପର୍ଯ୍ୟନ୍ତ ନାଟକ ରଚନା ହୋଇ ନ ଥିଲା । ଏ ପୁସ୍ତକ (ବାବାଜୀ) ତନ୍ନିର ପ୍ରଥମ ଉଦ୍ୟମ ଅଟଇ । × × ଏହା ଦ୍ୱାରା ନାଟକର ବାଟ ଫିଟିଲା । ଅତଃପର ପ୍ରକୃତ ନାଟକ ଓଡ଼ିଆ ଭାଷାରେ ବାହାରି ପାରେ ।"

କଟକର ପତ୍ରିକାରେ ଏଭଳି ଟିପ୍ପଣୀ ପ୍ରକାଶ ପାଇବା ବେଳେ, ତେଣେ (ସେତେବେଳର ଆନ୍ଧ୍ର ଅଞ୍ଚଳ ରୂପେ ବିବେଚିତ) ପାରଳାର କବି ଅପର୍ଣ୍ଣା ପଣ୍ଡା ସ୍ୱରଚିତ 'କବିଜୀବନୀ'ରେ ୧୯୧୭ ଖ୍ରୀଷ୍ଟାବ୍ଦରେ ପ୍ରଥମ ଓଡ଼ିଆ ନାଟ୍ୟକାରଙ୍କର ପ୍ରଶଂସା କରି ଲେଖି-ଥିଲେ :—

"ଜଗନ୍ନାଥ ପରୀକ୍ଷା ହେ ପାରଳା ନିବାସୀ
କବିତା ପ୍ରଭାବେ ହେଲ ତୁମ୍ଭେ କବିଶଶୀ
ଉତ୍କଳେ ନାଟକ ଗନ୍ଧ ନ ଥିଲା ପୂର୍ବରେ
ରଚିଲ ନାଟକ ଏକ ତୁମ୍ଭେ ପ୍ରଥମରେ
ନାଟକଟି ଗୋପୀନାଥ ବଲ୍ଲଭ ନାମରେ
ଖ୍ୟାତ ହୋଇଅଛି ଏବେ ଉତ୍କଳ ରାଜ୍ୟରେ ।"

( କବିଜୀବନୀ ପୃ: ୩ )

କଟକର ସାହିତ୍ୟିକ ମଜ୍ଜ ଆଖିରେ ପଡ଼ିଥିବା 'ବାବାଜୀ' ନାଟକକୁ ପ୍ରଥମ ନାଟକ ବୋଲି କହିବାରେ ଯେତିକି ସମୀଚୀନତା ଅଛି, ପାରଳାର ସାହିତ୍ୟିକ ଗୋପୀନାଥ ବଲ୍ଲଭ ନାଟକକୁ ପ୍ରଥମ ନାଟକ କହିବାରେ ତତୋଧିକ ସମୀଚୀନତା ଅଛି ବୋଲି କୁହା ଯାଇପାରେ । କିନ୍ତୁ ଏହା ବୋଲି 'ବାବାଜୀ' ନାଟକର ପ୍ରକାଶ ସମ୍ପର୍କରେ ସ୍ୱର୍ଗତ ଅପର୍ଣ୍ଣା ପଣ୍ଡାଙ୍କର ସ୍ପଷ୍ଟ ଧାରଣା ଥିଲା ବୋଲି କହିବା ବୋଧ ହୁଏ ସମୀଚୀନ ହେବ ନାହିଁ । ସେ ଯାହା ହେଉ, କାଳ ବିଗ୍ଭରରେ "ଗୋପୀନାଥ ବଲ୍ଲଭ ନାଟକ" ସର୍ବଥା ସେ 'ବାବାଜୀ ନାଟକ'ର ପୂର୍ବବର୍ତ୍ତୀ ଓ ଓଡ଼ିଆ ନାଟ୍ୟକଳାର ବିକାଶ ଧାରା ନିର୍ଦ୍ଦେଶରେ ଏକ ଆଲୋକ ସ୍ତମ୍ଭ ଏଥିରେ ସନ୍ଦେହର ଅବକାଶ ନାହିଁ ।

ଏହା ବ୍ୟତୀତ, ୧୯୧୭ରେ 'ଉତ୍କଳ ସାହିତ୍ୟର ଇତିହାସ'ର ଲେଖକ ସ୍ୱର୍ଗତ ତାରିଣୀ ଚରଣ ରଥ ମଧ୍ୟ ଉକ୍ତ ମୁଖବନ୍ଧରେ ଲେଖିଥିଲେ—"ଏ (ରଘୁନାଥ ପରିଚ୍ଛା), × × × ଗୋପୀନାଥ ବଲ୍ଲଭ ନାଟକ ନାମରେ ଖଣ୍ଡିଏ ନାଟକ ଲେଖିଛନ୍ତି (ପୃଷ୍ଠା ୭୪) କିନ୍ତୁ ବୋଧହୁଏ, 'ଓଡ଼ିଆ ନାଟ୍ୟକଳା'ରେ ଶ୍ରୀ ଗିରିଜାଙ୍କର ସର୍ବ ପ୍ରଥମ ଓଡ଼ିଆ ନାଟକ ପ୍ରସଙ୍ଗରେ ପରିଚ୍ଛାଙ୍କର ନାମ ଲେଖି ନ ଥିବାରୁ ଆଜର ବହୁ ଆଲୋଚକ ତାଙ୍କ ବିଷୟରେ ସୂଚନା ମଧ୍ୟ ଦେଉ ନାହାନ୍ତି ।

## ନାଟ୍ୟକାରଙ୍କ ଅନ୍ୟାନ୍ୟ ଗ୍ରନ୍ଥ

ଅପର୍ଣ୍ଣା ପଣ୍ଡାଙ୍କ "କବିଜୀବନୀ"ରେ ଆଲୋଚ୍ୟ ନାଟ୍ୟକାରଙ୍କର ଅନ୍ୟ କେତେଖଣ୍ଡି ରଚନାର ନାମୋଲ୍ଲେଖ ଅଛି—(୧) ରାଧା କୃଷ୍ଣ ଲୀଳା (୨) (ଫଗୀତରେ) ଶ୍ରୀ ରାମାୟଣ (୩) ତାଳ ସର୍ବସାର । କିନ୍ତୁ କବିଙ୍କ

ରାଧାମାଧବ ବିଳାସ (୧୯୫୭ରେ ପ୍ରକାଶିତ) କାବ୍ୟର ଭୂମିକାରେ ସର୍ବମୋଟ ଦଶଖଣ୍ଡି ଗ୍ରନ୍ଥର ବିବରଣୀ ଦିଆଯାଇଛି, ଯଥା :—

(୧) ସଙ୍ଗୀତ ରାମଲୀଳା
(୨) ସଙ୍ଗୀତ କୃଷ୍ଣଲୀଳା
(୩) ମାନ୍ତ ଶତକ
(୪) ସଙ୍ଗୀତ ରତ୍ନାକର
(୫) ବାସୁଦେବ ନାଟକ
(୬) କୃଷ୍ଣଚନ୍ଦ୍ରମା ନାଟକ
(୭) ଗୋପୀନାଥ ବଲ୍ଲଭ ନାଟକ
(୮) ରାଧାମାଧବ ବିଳାସ
(୯) ମୁକ୍ତାନାଟିକ
(୧୦) ଲକ୍ଷଣ ଚନ୍ଦ୍ରୋଦୟ

(ଭୂମିକା ପୃ: ୩)

ଏଇ ତାଲିକାର ପଞ୍ଚମ ପୁସ୍ତକଟିକୁ ଅଧ୍ୟାପକ କାହ୍ନୁଚରଣ ମିଶ୍ର ତାଙ୍କର ଏକ ବିଶିଷ୍ଟ ଆଲୋଚନାରେ "ଗୀତ ରତ୍ନାକର" ବୋଲି ଲେଖିଛନ୍ତି । (ଦେଖନ୍ତୁ—ଆଲୋଚନା ମାଳା ପୃ: ୧୪୯)

ଗ୍ରନ୍ଥଗୁଡ଼ିକର ନାମକରଣରୁ ସେଗୁଡ଼ିକର ବିଷୟ ବସ୍ତୁର ଅବଧାରଣା କଷ୍ଟକର ନୁହେଁ । ତେବେ, ଶେଷ ଦୁଇଟିର ଟିକିଏ ପରିଚୟ ଦେବା ଆବଶ୍ୟକ ମନେହୁଏ । 'ମୁକ୍ତା ନାଟିକା'ରେ ମୁକ୍ତା ଫଳକୁ କେନ୍ଦ୍ରକରି ଶ୍ରୀକୃଷ୍ଣଙ୍କର ବ୍ରଜଧାମର କ୍ରୀଡ଼ା ବର୍ଣ୍ଣିତ ହୋଇଥିବାରୁ ଏଭଳି ନାମ କରଣ କରାଯାଇଛି । 'ରାଧାମାଧବ ବିଳାସ' ମୁଖବନ୍ଧରେ ଅଧ୍ୟାପକ ବେଣୀ ମାଧବ ପାଢ଼ୀ ଲକ୍ଷଣ ଚନ୍ଦ୍ରୋଦୟର ପରିଚୟ ପ୍ରସଙ୍ଗରେ ଲେଖିଛନ୍ତି—

"ଏପରି ଉଭୟମୁଖୀ କବିତା ଛନ୍ଦ ସାହିତ୍ୟ ବା ସଙ୍ଗୀତ ଜଗତରେ କ୍ୱଚିତ୍ ଦେଖାଯାଏ"। ବୋଧହୁଏ ଲେଖକ 'ଲକ୍ଷଣ ଚନ୍ଦ୍ରୋଦୟ' ନଦେଖି କେବଳ ପ୍ରଶସ୍ତି ମୂଳକ ମନ୍ତବ୍ୟ ଦେଇଛନ୍ତି। ଏଥିରେ ନାନା ଦୃଷ୍ଟାନ୍ତ ସୂତ୍ରରେ କବିତାର ଉଦ୍ଧୃତ ଥିଲେ ହେଁ ଗଦ୍ୟାଂଶ ମଧ୍ୟ କମ୍ ନାହିଁ।

ନାଟକ ଆଲୋଚନା—ଏହା ପ୍ରକୃତରେ ନାଟକର ସମସ୍ତ ଲକ୍ଷଣଯୁକ୍ତ ନୁହେଁ। ଆଧୁନିକ ପରିଭାଷାରେ ଏହା ଗୀତିନାଟ୍ୟରୂପେ ଅଭିହିତ ହୋଇପାରେ, କାରଣ ଅଙ୍କ ବିଭାଗ, ପଞ୍ଚସନ୍ଧି, ପଞ୍ଚଅବସ୍ଥା ପଞ୍ଚଅର୍ଥ ପ୍ରକୃତି ପ୍ରଭୃତି ନାହିଁ। ନାଟକର ମୂଳରେ ନାନ୍ଦୀ ଓ ସୂତ୍ରଧାର ଥିଲେହେଁ ନାଟ୍ୟକାରଙ୍କର ଶାସ୍ତ୍ରଗତ ପାଣ୍ଡିତ୍ୟ ପ୍ରଦର୍ଶନ କରିବାରେ ସେଗୁଡ଼ିକର ଲକ୍ଷ୍ୟ ପର୍ଯ୍ୟବସିତ ବୋଲି ମନେ ହେଉଛି। ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ମିଳନ ହିଁ କବିଙ୍କର ମୁଖ୍ୟ ପ୍ରତିପାଦ୍ୟ ବିଷୟ। ଗୌଡ଼ୀୟ ବୈଷ୍ଣବମାନଙ୍କର ଗଭୀର ଭକ୍ତି ପ୍ରତି ଦୃଷ୍ଟି ନଦେଲେ ନାଟକଟିର ପ୍ରେମଚରିତ ବଡ଼ ପ୍ରଗଲ୍‌ଭ କାମୁକ ଚରିତ୍ରହୀନପରି ପ୍ରତୀତ ହେବ। ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ବ୍ୟତୀତ ଏଥିରେ ମଧୁମଙ୍ଗଳ, ବିଶାଖା ପ୍ରଭୃତି ନାୟକ ନାୟିକାଙ୍କର ଲକ୍ଷ୍ୟ ସିଦ୍ଧି ଓ ଚରିତ୍ର ଚିତ୍ରଣର ସହାୟକରୂପେ ଅଂଶ ଗ୍ରହଣ କରିଛନ୍ତି। କବିସୂର୍ଯ୍ୟଙ୍କର ଚମ୍ପୂରେ ଭାବର ଯେଉଁ ଗାମ୍ଭୀର୍ଯ୍ୟ ଓ ମନସ୍ତତ୍ତ୍ୱର ଯେଉଁ ସୂକ୍ଷ୍ମତା ପରିଲକ୍ଷିତ ହୁଏ, ତାହା ଅବଶ୍ୟ କବିଚନ୍ଦ୍ରଙ୍କର ଏହି ନାଟକରେ ସହଜ ଲଭ୍ୟ ନୁହେଁ, କିନ୍ତୁ ଚନ୍ଦ୍ରଙ୍କର କାନ୍ତିର କମନୀୟତା ଯେପରି ବିରହୀ ବିରହିଣୀଙ୍କର ଅନ୍ତରକୁ ଆଲୋଡ଼ିତ କରେ, ଭଗବତ୍ ବିରହ ଅନୁଭବ କରୁଥିବା ଭକ୍ତମାନଙ୍କ ହୃଦୟକୁ କବିଚନ୍ଦ୍ରଙ୍କର ଏହି ରସାଳ ରଚନା ସେପରି ଆଲୋଡ଼ିତ କରିବ। ଭକ୍ତ କବି ଅଭିମନ୍ୟୁ ସାମନ୍ତ ସିଂହାର କିଶୋରୀ ଶ୍ରୀ ରାଧାଙ୍କ ସେବିକା

ହେବାପାଇଁ ଯେଉଁପରି ବ୍ୟଗ୍ରତା ପ୍ରକାଶ କରିଛନ୍ତି,(ବିଦଗ୍ଧ ଚିନ୍ତାମଣିର ପ୍ରଥମଛନ୍ଦରେ) ପରିଚ୍ଛା ମଧ୍ୟ ସେହିପରି ଆବେଗ ପ୍ରକାଶ କରିଛନ୍ତି ।

ଅଷ୍ଟାଦଶ ଶତାବ୍ଦୀରେ ରାଧାକୃଷ୍ଣ ଲୀଳା, ଭାରତଲୀଳା ଓ ରାମଲୀଳା ପ୍ରଭୃତି ଓଡ଼ିଶାର ସାଂସ୍କୃତିକ ଜୀବନର ଏକ ଏକ ବିଶିଷ୍ଟ ବିଭାଗରୂପେ ପରିଗଣିତ ହେଉଥିଲା । ଭାଷାର ଆଡ଼ମ୍ବର, ଛନ୍ଦର ନୂତନତା ଓ ଶାସ୍ତ୍ରୀୟ ପାଣ୍ଡିତ୍ୟର ପରିବେଶ ମଧ୍ୟରେ ସେଇ ଚିର-ପରିଶୀଳିତ ରାଧା-କୃଷ୍ଣ ଲୀଳାକୁ ରୂପାୟିତ କରିବାପାଇଁ ପରିଚ୍ଛାଙ୍କର ଏଇ ଉଦ୍ୟମ 'ଗୋପୀନାଥ ବଲ୍ଲଭ ନାଟକ'ରେ ରୂପ ପରିଗ୍ରହ କରିଅଛି । ରାୟ ରାମାନନ୍ଦଙ୍କର 'ଜଗନ୍ନାଥ ବଲ୍ଲଭ' ଏ ଦେଶର ଭକ୍ତ ଓ ପଣ୍ଡିତ ମଣ୍ଡଳୀର ଏକ ପରମ ଆଦରଣୀୟ ଗ୍ରନ୍ଥ । ସୁତରାଂ ନାଟକଟିର ନାମକରଣରେ ଏହାର ପ୍ରଭାବ ପରିଚ୍ଛାଙ୍କ ଉପରେ ପଡ଼ିଥାଇ ପାରେ । ଦ୍ୱିତୀୟରେ, ପରିଚ୍ଛା ଥିଲେ କିଳ୍ପରର 'ଗୋପୀନାଥ' ମନ୍ଦିରର ତତ୍ତ୍ୱାବଧାରକ । ସୁତରାଂ, କୃଷ୍ଣଙ୍କର ବହୁନାମ ମଧ୍ୟରୁ 'ଗୋପୀନାଥ' ନାମଟି ନିର୍ବାଚନ କରିବାରେ ତାଙ୍କ ତତ୍ତ୍ୱାବଧାନରେ ଥିବା ସେଇ ମନ୍ଦିରର ଦେବତାଙ୍କ ନାମ ସର୍ବପ୍ରଥମେ ତାଙ୍କୁ ନାଟକଟିର ନାମକରଣରେ ପ୍ରେରଣା ଦେଇଥାଇ ପାରେ । ତେଣୁ 'ଗୋପୀନାଥ ମନ୍ଦିର'ରୁ ଗୋପୀନାଥ ଓ 'ଜଗନ୍ନାଥ ବଲ୍ଲଭ'ରୁ ବଲ୍ଲଭ ନେଇ ଏହିଭଳି ଭାବରେ ହୁଏତ-ନାଟକଟିର ନାମକରଣ କରା-ଯାଇ ଥିଲା ବୋଲି ଅନୁମାନ କରାଯାଇ ପାରେ ।

ରାଧା-କୃଷ୍ଣଙ୍କର ଚରିତ୍ର ଚିତ୍ରଣରେ ସେଭଳି କିଛି ନବୀନତା ନ ଥିଲେହେଁ ପ୍ରକାଶ ଭଙ୍ଗୀରେ ତାଙ୍କର ଯଥେଷ୍ଟ ନୂତନତା ରହିଛି । ସାଧାରଣରେ ବୈଷ୍ଣବ ସାହିତ୍ୟରେ, ବିଶେଷରେ, କାବ୍ୟ କବିତାରେ ଯେଉଁ ଭକ୍ତି ଦେଖାଯାଏ, ତାହା ତାମସୀ ଭକ୍ତି ବୋଲି କେହି କେହି କହନ୍ତି । କାରଣ, ସାଧାରଣ ପାଠକର ମନକୁ ଭଗବତ୍ ଚରିତ ପ୍ରତି

ଆକର୍ଷଣ କରିବାର ଏ ସମସ୍ତ ପ୍ରକାରର ପ୍ରେମଚିହ୍ନ ଏକପ୍ରକାର ଆବଶ୍ୟକ ବିବେଚିତ ହୋଇଥାଏ । ଶବ୍ଦମାନଙ୍କର ଯାହା ଆଭିଧାନିକ ଅର୍ଥ, ତାହା ଅତିକ୍ରମକରି ଆଧ୍ୟାତ୍ମିକ ଚିନ୍ତାରେ ନିମଜ୍ଜିତ ହେବା ଏଭଳି କାବ୍ୟର ଅଧିକାଂଶ ପାଠକଙ୍କ ପକ୍ଷରେ ସମ୍ଭବପର ନୁହେଁ । ସେ ଯାହାହେଉ, ତାହାହିଁ ସାଧାରଣତଃ କୃଷ୍ଣଚରିତ ପରିବେଷଣରେ ଆମ କବି ସମାଜର ଏକ ପରିଗୃହୀତ ଶୈଳୀ । ତେବେ ସେହି ଶୈଳୀ ମଧ୍ୟରେ କବି ନାୟକ ନାୟିକାଙ୍କାର ମନସ୍ତତ୍ତ୍ୱ ଫୁଟାଇବାରେ ନିଜର ଶକ୍ତି ଓ ମୌଳିକତା ଫୁଟାଇବାକୁ ଚେଷ୍ଟା କରିଛନ୍ତି ।

ନାଟକ ମୂଳରେ ସୂତ୍ରଧାରଙ୍କର ଦୀର୍ଘ ବକ୍ତୃତା ଶାସ୍ତ୍ର ପାଣ୍ଡିତ୍ୟ ପୂର୍ଣ୍ଣ ବିବିଧ ତଥ୍ୟରେ ପରିପୂର୍ଣ୍ଣ । ଏହା ଗଦ୍ୟରେ ରଚିତ, ଅନ୍ୟ କେତେକ ସ୍ଥଳରେ ମଧ୍ୟ ଗଦ୍ୟର ସମାବେଶ କରାଯାଇଛି । କିନ୍ତୁ ଏ ଭଳି ଗଦ୍ୟର ପରିମାଣ ଅତ୍ୟନ୍ତ ଅଳ୍ପ । ଯେଉଁଠାରେ ମଧ୍ୟ ଗଦ୍ୟର ଆଶ୍ରୟ ନିଆଯାଇଛି, ସେଠାରେ ଅନୁପ୍ରାସାଳଙ୍କାର କିମ୍ବା ଗୌଡ଼ୀରୀତିର ସମାବେଶରେ ରଚନାର ଶ୍ରୁତିଶ୍ରାବ୍ୟତା ବର୍ଦ୍ଧନ ଲାଗି ପ୍ରବଳ ପ୍ରୟାସ କରାଯାଇଛି । ଉଦାହରଣ ସ୍ୱରୂପ ୧୦, ୩୦, ୪୬, ୫୩, ୫୪, ୭୦ ପୃଷ୍ଠାରେ ଥିବା ଗଦ୍ୟାଂଶ ମାନଙ୍କର ଆଲୋଚନା କରାଯାଇ ପାରେ । କେବଳ ଦଶମ ପୃଷ୍ଠାରୁ ଦୁଇ, ଚାରି ଧାଡ଼ି ଏଠି ଉଦ୍ଧାର କରାଯାଉଛି :—

"ଅଥ ଶାନ୍ତ ଦାନ୍ତ ଧୀମନ୍ତ ନିତାନ୍ତ ସ୍ୱାନ୍ତ ଏକାନ୍ତ—ବିହାରି ମଧୂହାର । କାଳିକାକାନ୍ତ କାଳିକାକାନ୍ତ ପରିଦୁରନ୍ତ ବୃତ୍ତାନ୍ତ କୁନ୍ତ ସମକେତକୀ । ବସନ୍ତବାସ ବସନ୍ତବାସ ବନ କଲୋକ ଅତ୍ୟନ୍ତରେ ସନ୍ତାପରେ । ଚିନ୍ତାମଣି ଚିନ୍ତାମଣି କାନ୍ତାମଣି । କୁମୁଦବନ୍ଧୁ କାରବିନ୍ଦ କୁନ୍ଦଗନ୍ଧଫଳ ମନ୍ଦାର ସିନ୍ଧୁବନ୍ଦନ ଚନ୍ଦନ ଗନ୍ଧବିନ୍ଦୁ ସମ ହାସଅଧର ମୁଖ ଦଶନ ନାସାବଦନ ଗମନ ଗମ୍ଭୀର ଶୀତଳ ଅଙ୍ଗୀରେ ।"

ଏ ଭଳି ଶୈଳୀର ଉଦ୍‌ବୋଧକ ହେଉଛନ୍ତି ସଂସ୍କୃତ କାବ୍ୟ ସାହିତ୍ୟ । କେବଳ ଭାଷା ବ୍ୟବହାରରେ, ଅର୍ଥର ଅବବୋଧ ବ୍ୟତି-ରେକେ ମଧ୍ୟ ଶ୍ରୋତା ମାନଙ୍କର ଚିତ୍ତବିନୋଦନ ଓ ମନୋନନ୍ଦନ କରିବା ଏଭଳି ପଦବିନ୍ୟାସ ଭଙ୍ଗୀର ଅନ୍ୟତମ ଲକ୍ଷ୍ୟ । ଗଦ୍ୟର ସ୍ୱଳ୍ପତା ଦୃଷ୍ଟିରେ ଗଦ୍ୟପଦ୍ୟର ସମାବେଶ ଦୃଷ୍ଟିରୁ ଏହା ଚମ୍ପୂ ଜାତୀୟ ହେଲେ ହେଁ ସୂତ୍ରଧାରାଦି ସମାବେଶରୁ ଓ ଚରିତ୍ର-ମାନଙ୍କର ନାଟକୀୟ ସଂଳାପ ଦୃଷ୍ଟିରୁ ଏହା ଯଥାର୍ଥରେ ଏକ ନାଟକୀୟ ଲକ୍ଷଣଯୁକ୍ତ ସାହିତ୍ୟସୃଷ୍ଟି । ଓଡ଼ିଆ ନାଟକ ରଚନାର ପ୍ରାଥମିକ ସ୍ତରରେ ଏଇ ରଚନାଟିକୁ ନାଟକ କହିବାରେ କୌଣସି ଅଯୌକ୍ତି-କତା ନାହିଁ । କାରଣ ଯେ କୌଣସି ସାହିତ୍ୟିକ ବିଭବର ପ୍ରାଥମିକ ସ୍ତରରେ ଏହାହିଁ ହୋଇଥାଏ ।

ଏ ନାଟକରେ ନାନା ରାଗ ଓ ତାଳ ବିଶିଷ୍ଟ ଓଡ଼ିଆ ସଙ୍ଗୀତ ସହ ସଂସ୍କୃତ ବୃତ୍ତର ମଧ୍ୟ ଅନେକ ଶ୍ଳୋକ ସନ୍ନିବେଶିତ । ଦକ୍ଷିଣ ଭାରତୀୟ ଭାଷାମାନଙ୍କ ମଧ୍ୟରେ, ସଂସ୍କୃତ ଛନ୍ଦ ଅନୁସରଣରେ ଭାଷା-ଗୀତ ରଚନାର ଆଦର ଅତ୍ୟନ୍ତ ବେଶୀ । କବିଙ୍କର ଏଇ ସଂସ୍କୃତ ଛନ୍ଦ-ପ୍ରୀତି ଦକ୍ଷିଣୀ ପ୍ରଭାବରୁ ଉଦ୍‌ଭୂତ ବୋଲି ଅନୁମାନ କରିବାରେ ଯଥେଷ୍ଟ ଯୌକ୍ତିକତା ଥିଲା ପରି ଜଣାଯାଏ । ପଣ୍ଡିତ ଗୋପୀନାଥନନ୍ଦ ଏଇ ଭଳି ଶ୍ଳୋକ ରଚନାରେ ଅଖଣ୍ଡ ଶକ୍ତିମତ୍ତା ପ୍ରଦର୍ଶନ କରି ଯାଇଛନ୍ତି । ତାଙ୍କର ମେଘଦୂତର ଅନୁବାଦରେ ଓ ଅନ୍ୟାନ୍ୟ ପୁସ୍ତକରେ ଏ ଭଳି ରଚନାର ମୂଳଦୁଆ ଦୃଢ଼ଭାବରେ ପଡ଼ିଛି । ଏପରିକି କବି ଗଙ୍ଗାଧର ମେହେର ମଧ୍ୟ ଏଇ ଭାବରେ ତାଙ୍କର ଅହଲ୍ୟା ସ୍ତବଟି ରଚନା କରିଥିଲେ । ସ୍ୱର୍ଗତ ଶ୍ୟାମସୁନ୍ଦର ରାଜଗୁରୁ ସ୍ୱୀୟ 'ପ୍ରବନ୍ଧାବଳୀ'ରେ ଏଇ ଛନ୍ଦର ବିସ୍ତାର କରିଛନ୍ତି ।

କିନ୍ତୁ ଗୋଟିଏ କଥା, ଏଠି ବିସ୍ମୟ ସହିତ ଆଲୋଚନା କରିବାକୁ ହେଉଅଛି । ପରିଚ୍ଛା ମହାଶୟ ନିଜେ ଛନ୍ଦ ଶାସ୍ତ୍ର ସମ୍ପର୍କରେ ପୁସ୍ତକ ପ୍ରଣୟନ କରିଛନ୍ତି, ଅଥଚ, ତାଙ୍କର ଏହି ନାଟକରେ ଅନେକ ଶ୍ଳୋକରେ ଗୁରୁତର ଛନ୍ଦୋଭଙ୍ଗ ଦୋଷ ପରିଲକ୍ଷିତ ହେଉଅଛି । ଅବଶ୍ୟ ୧୮୯୬ର ସଂସ୍କରଣକୁ ମୂଳ କରି ଏହି ସଂସ୍କରଣ ଏବେ ପ୍ରକାଶ ପାଉଅଛି । ତେବେ ମୂଳଟିର ବର୍ଣ୍ଣାଶୁଦ୍ଧି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ସେ ଭଳି ଅନେକ ଦୋଷ ମୁଦ୍ରାକର ପ୍ରମାଦ ବୋଲି ହୁଏତ ଧରାଯାଇପାରେ । କିନ୍ତୁ ସେତିକିରେ ସମସ୍ୟାର ସମାଧାନ ହେଉ ନାହିଁ । କାରଣ ଅନେକ ଶ୍ଳୋକରେ ଗୁରୁତର ଛନ୍ଦୋଭଙ୍ଗ ହୋଇଅଛି ,ଏବଂ ଯେଉଁ ଶବ୍ଦ ଗୁଡ଼ିକ ଲାଗି ସେ ଦୋଷ ଘଟିଅଛି, ସେଗୁଡ଼ିକୁ ମୁଦ୍ରାକର ପ୍ରମାଦ ବୋଲି କହି, କବିଙ୍କୁ ଦୋଷ-ମୁକ୍ତ କରି ହେବ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ ୧ମ ପୃଷ୍ଠା ୨ୟ ଶ୍ଳୋକର ତୃତୀୟ ପାଦ, ୧୫ ପୃଷ୍ଠାରେ ଥିବା ଶ୍ଳୋକଟିର ପ୍ରଥମ ପାଦ, ୨୮ ପୃଷ୍ଠାର ଶ୍ଳୋକଟିର ୨ୟ ପାଦ, କିମ୍ବା ୫୦ ପୃଷ୍ଠାର 'ପୃଥ୍ୱୀ' ବୃତ୍ତର ଶ୍ଳୋକଟି ବିଚାର କରାଯାଇପାରେ । ବହୁ ଦୃଷ୍ଟାନ୍ତରୁ ଏଠି ଏହି କେତୋଟିର ମାତ୍ର ଉଲ୍ଲେଖ କରାଗଲା । ତେବେ ଏଭଳି ପ୍ରମାଦ କାହିଁକି ଯେ ଘଟିଲା ତାହା ସର୍ବଥା ଚିନ୍ତ୍ୟ । ଆହୁରି ମଧ୍ୟ, ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ବୃତ୍ତର ଶ୍ଳୋକ ଠାଏ ଠାଏ ଅଭ୍ରାନ୍ତ ଥିବା ସ୍ଥଳେ ଅନ୍ୟ ସ୍ଥଳରେ ଏଡ଼େ ଦୋଷଯୁକ୍ତ ଯେ କାହିଁକି ହେଲା, ବୁଝି ହେଉ ନାହିଁ ।

ଏ ସବୁ ସତ୍ତ୍ୱେ, 'ରାଧା ମାଧବ-ବିଳାସ' ରଚୟିତାଙ୍କର ମଧୁର କବିତା ରଚନା ଶକ୍ତିରେ ସନ୍ଦେହ କରାଯାଇ ନ ପାରେ । ଭାଷା ଓ ଭାବର ସୁସଙ୍ଗତ ବିନ୍ୟାସରେ ଓ ଆଳଙ୍କାରିକ ସୌନ୍ଦର୍ଯ୍ୟ ଛଟାରେ

କବିତା ଯେ ହୃଦୟଗ୍ରାହୀ ହୋଇଛି, କହିବା ଅନାବଶ୍ୟକ । ଏଠି ଦୁଇଟି ଶ୍ଳୋକ ଉଦ୍ଧାର କରାଯାଉଛି ।

ହା ଲୀଳାବତି ହା ସୁକଣ୍ଠି ବରନେ
ହା ଚନ୍ଦ୍ର ବିମ୍ବାନନେ
ହା ଲୋଳାୟିତଲୋଚନେ ପ୍ରିୟତମେ
ହା ଁ ଶ୍ରବନେ ଶୋଭନେ ।
ହା ଲଜ୍ଜାଗୁଣଭୂଷିତେ ସୁରସିକେ
ମଦ୍‌ବକ୍ଷହାରୋତ୍ତମେ
ହା ଲକ୍ଷ୍ମୀଗୁଣସେବିତେ ମମହିତେ
ପ୍ରାଣାଧିକେ ରାଧିକେ ।
( ପୃ. ୧୭ )

କିମ୍ବା

ନବରସା ବନିତା ବନ ନେହରୁ
ନବ ରସାଳବନେ ପିକ ଶ୍ରୁତି ।
ନବର ସାରଜନେ ତ ଗଣା ମତେ
ନବରସା ସୁରତେ ତୁ ଥରେ ମତେ ।
( ପୃ. ୭୧ )

ଉପସଂହାରରେ ବକ୍ତବ୍ୟ ଯେ, ଓଡ଼ିଆ ଭାଷା ଉପରେ କବିଙ୍କର ଅସାଧାରଣ ପ୍ରତିପତ୍ତି ଥିଲା । ଠାଏ ଠାଏ ଛନ୍ଦୋଭଙ୍ଗ ଦୋଷ କିମ୍ବା ବର୍ଣ୍ଣାଶୁଦ୍ଧି ଅନିବାର୍ଯ୍ୟ ହୋଇ ପଡ଼ିଥିଲେ ହେଁ, ଓଡ଼ିଆ ନାଟ୍ୟ ସାହିତ୍ୟର ଆଲୋଚକମାନଙ୍କ ନୂତନ ଦୃଷ୍ଟିରୁ ନାଟ୍ୟ ସାହିତ୍ୟର ବିକାଶଧାରା ଦର୍ଶାଇବାରେ ଏହା ଅବଶ୍ୟ ଅଶେଷ ସହାୟକ ହେବ ବୋଲି ଆଶା । ପୁଣି ଓଡ଼ିଆ ଛନ୍ଦ ଓ ଓଡ଼ିଆ

ଗଦ୍ୟର ଇତିହାସରେ ମଧ୍ୟ ଏ ନାଟକ ଆଲୋକପାତ କରିବ । 'ପ୍ରଥମ ନାଟକ'ର ସମ୍ମାନଭାଜନ ହେଲେ ହେଁ ପୁସ୍ତକଟି ଦେଖିବାକୁ ମଧ୍ୟ ମିଳୁ ନ ଥିଲା । ଏଇ ସମସ୍ତ ଦୃଷ୍ଟିରୁ ଏହାର ପୁନର୍ମୁଦ୍ରଣର ଆବଶ୍ୟକତା ଅନୁଭୂତ ହେଲା ।

ପାରଳାନିବାସୀ ୰ କବିଚନ୍ଦ୍ର ରଘୁନାଥ ପରିଚ୍ଛାଙ୍କ ନାମରେ ନାମିତ 'କବିଚନ୍ଦ୍ର ପାଠାଗାର'ର ସମ୍ପାଦକ ଶ୍ରୀ କୃଷ୍ଣଚନ୍ଦ୍ର ଗନ୍ତାୟତ ୧୮୯୭ର ପୁସ୍ତକଟି ଯୋଗାଇ ଦେଇ ଧନ୍ୟବାଦର ପାତ୍ର ହୋଇଛନ୍ତି । 'ପରୀକ୍ଷା' ବଦଳରେ ଜନପ୍ରିୟ 'ପରିଚ୍ଛା' ହିଁ ଏଥିରେ ବ୍ୟବହାର କରାଯାଇଛି ।

ଗୌରୀ କୁମାର ବ୍ରହ୍ମା
ସେକ୍ରେଟେରୀ
ଓଡ଼ିଶା ସାହିତ୍ୟ ଏକାଡେମୀ

# ବିଜ୍ଞାପନ

ଉତ୍କଳଭାଷାରେ ଅନେକ ପୁରାତନଗ୍ରନ୍ଥ ପୂର୍ବକବିଙ୍କଦ୍ୱାରା ରଚନା ହୋଇ ଏତେବେଳେ ମୁଦ୍ରାଯନ୍ତ୍ରର ସାହାଯ୍ୟରେ ଦେଶ ବିଦେଶରେ ପ୍ରଚାର ହେବାରୁ ଉତ୍କଳର ଗୌରବ ଯଥୋଚିତରୂପେ ବିସ୍ତାର ହେଉଅଛି, କିନ୍ତୁ ବର୍ତ୍ତମାନକାଳରେ ଉତ୍କଳ-ଦେଶର ଲୋକମାନେ ବିଦ୍ୟା ଓ ବୁଦ୍ଧିର ଉଦ୍ରୂପ ବ୍ୟବହାର କରୁଅଛନ୍ତି କି ନା ଏ କଥାର ପରିଚୟ ଦେବାନିମିତ୍ତ ଆମ୍ଭେ ଗଞ୍ଜାମ ଜିଲ୍ଲାନ୍ତର୍ଗତ ପାରଳାଖେମଣ୍ଡି ନିବାସୀ କବିଚନ୍ଦ୍ର ରଘୁନାଥ ପରିଛାଙ୍କକୃତ ଏହି "ଗୋପୀନାଥ ବଲ୍ଲଭ" ନାଟକ ମୁଦ୍ରିତ କରାଇ ଜନସମାଜରେ ଉପସ୍ଥିତ କରୁଅଛୁଁ । ଏଥିରେ ଶ୍ରୀ ରାଧାକୃଷ୍ଣଙ୍କର ରାସଲୀଳାଚରିତର କିୟଦଂଶ ସଙ୍ଗୀତ ନାଟକ ପ୍ରକାରରେ ବର୍ଣ୍ଣିତ ହୋଇଅଛି ।

ପାଠକମାନେ କିଞ୍ଚିତ୍ ଶ୍ରମସ୍ୱୀକାରପୂର୍ବକ ଥରେ ପାଠ କଲେ ଏଥିର ମର୍ଯ୍ୟାଦା ଜାଣିପାରିବେ ଏବଂ ଏତିକରେ ଆମ୍ଭର ଆଶା ପୂର୍ଣ୍ଣ ହେବ ।

ଏ ପୁସ୍ତକାନ୍ତର୍ଗତ ସଙ୍ଗୀତମାନଙ୍କ ବିଷୟରେ କବି ଲେଖି-ଅଛନ୍ତି ଯେ "ଏଥିରେ ଯେଉଁ ଯେଉଁ ଗୀ: ମାନଙ୍କରେ ରସ ସମାପ୍ତି ନ ହେଉଣୁ ମିଳନ ହେଉଅଛି ସେହି ଗୀତମାନଙ୍କୁ ଗାଇବ ନାହିଁ । ସେହି ଗୀତମାନଙ୍କୁ ଲେଖିବାର ନଥିଲା, କେବଳ କେଉଁମାନେ ଏଥିରୁ ଗୀତମାନ ନେବାକୁ ହେଲେ ଗୀତ ଊଣା ହେବ ବୋଲି ଲେଖିଲୁଁ । ଗ୍ରନ୍ଥରେ ସିନା ଊଣା ହେବ ଏକୈକ ଗୀତ ଗାନରେ ପୂର୍ଣ୍ଣ ହେବ ।"

ତା ୨୭ ରିଖ ଅପ୍ରେଲ
ସନ ୧୮୬୮ ସାଲ
ଶ୍ରୀ ଗୌରୀଶଙ୍କର ରାୟ

ଏ ପୁସ୍ତକର ପ୍ରଥମ ସଂସ୍କରଣ ଅନେକ ଦିନରୁ ଶେଷ ହୋଇଅଛି ଏବଂ କବି ମଧ୍ୟ ଏ ସଂସାରରୁ ବିଦାୟ ହୋଇଅଛନ୍ତି । ବର୍ତ୍ତମାନକୁ ଏ ପୁସ୍ତକ ଅନେକ ଲୋକ ଲୋଡ଼ିବାର ଦେଖି ଦ୍ୱିତୀୟ ସଂସ୍କରଣ ପ୍ରକାଶ କଲୁଁ । ଭରସା ହୁଅଇ ସମଧିକ ଆଦରରେ ସର୍ବସାଧାରଣରେ ଗୃହୀତ ହେବ ।

କଟକ
ତା ୮ରିଖ ଅପ୍ରେଲ
ସନ ୧୮୯୬ ସାଲ

ଶ୍ରୀ ଗୌରୀଶଙ୍କର ରାୟ

# ଗୋପୀନାଥ ବଲ୍ଲଭ ନାଟକ

ଶିଖରିଣୀ ବୃତ୍ତ

ହୃଦେ ବନ୍ଦେ ମୋଦେ ହରଷକୃତ ଯେ ଶ୍ରୀଗୁରୁପଦେ ।
ମୁଦେ ଶ୍ରୀରୂପ ଶ୍ରୀମହତ ରଘୁନାଥାଂଘ୍ରି ଯୁଗରେ ।
ହ୍ୱଚେ ନିତ୍ୟାନନ୍ଦେ ଅତି ଶୁଭଯୁତେ ଗୌରଚରଣେ ।
ନ ଚେତ ଶ୍ରୀରାଧା ନଟବର ଭୁଲେ ସର୍ବ ସହ୍ୱରେ । ୧ ।

ହରେ ପାଦାକାରେ ଅଚ୍ଛି ତିଲକ ଯା ଭାଲପଟରେ,
ଉରେ ମୁଦ୍ରାଶ୍ରେଣୀ ହରି ମନ୍ତ୍ରମଧ୍ୟେ ଶୋଭନଧରେ ।
କରେ କଣ୍ଠେ ଶୋଭା "ଘନତୁଳସୀ ମାଳା ଲଗ୍ନବଶରେ ।
ଶିରେ ବନ୍ଦେ ନିତ୍ୟ ଶୁଭସହ୍ୱତ ଯେ ବୈଷ୍ଣବ-ପଦେ । ୨ ।

କରେ ଶୋଭା ବଂଶୀ କଟି-ଚରଣ-ବନ୍ଧେ ମୁଖ ଭୁଲେ ।
ଉରେ ଗୁଞ୍ଜାହାର ଅରୁଣ ଅଧରେ ମନ୍ଦ ହସିବା ।
ଶିରେ ବର୍ହାପିଞ୍ଛା ଶୁକ କନକକାଭ ତରୁଣକେ ।
ସ୍ମରେ ସେ କୃଷ୍ଣଙ୍କୁ ସତତ ମନ ରାଧା ସହିତରେ । ୩ ।

ଗଦ୍ୟ

ନନ୍ଦ ତନୟବର ସୁନ୍ଦର ବ୍ରଜସୁନ୍ଦରୀ ଶତ୍ରୁରବନ୍ଦ ମକରନ୍ଦ ସନ୍ଦୋହ-ପାନ-ମିଳିନ୍ଦ । ବ୍ରଜାହ୍ଲାଦକନ୍ଦ ଗୋବିନ୍ଦ ବୃନ୍ଦ ପାଳିତ ବୃନ୍ଦାରକବନ୍ଦିତ ତରୁବୃନ୍ଦାତିଶୋଭନ ବୃନ୍ଦାରଣ୍ୟେ । କଞ୍ଜ ଖଞ୍ଜନେକ୍ଷଣୀ । ମଦକୁଞ୍ଜର ମଦଗଞ୍ଜିତ ଗମନୀ । ଧୃତ-ଝଞ୍ଜାମୀସହ

ମଞ୍ଜୁଳ ବଞ୍ଜୁଳ କୁଞ୍ଜବିହାରୀ । ପୁଣ୍ଡରୀକେକ୍ଷଣ ଦୁର୍ଜନ ବ୍ରଜାଜ-ପୁଣ୍ଡରୀକ । କୁଣ୍ଡଳବଲ୍ଲିଗୋପନ ବାହୁଦଣ୍ଡ । କୁଣ୍ଡଳ ଗଣ୍ଡମଣ୍ଡିତ ରତ୍ନପଣ୍ଡିତ ଦୈତ୍ୟଦଣ୍ଡିତ ଦରଖଣ୍ଡିତ । ବ୍ରଜ-ମଣ୍ଡଳପାଳୀ । କଳକଣ୍ଠକଣ୍ଠ-କଣ୍ଠୀରବ ବନ୍ଦନ । ବୈକୁଣ୍ଠ ବୈକୁଣ୍ଠୋପରି ବିରାଜମାନ । ବୈକୁଣ୍ଠ ହିତକାରୀ । ନିର୍ବିକାରୀ ତବ ପାଦାମ୍ବୁଜେ ସନ୍ତତ ଭଜେଽହଂ ଭଜେଽହଂ ।

ରାଗ ମାଳବ ।ତାଳ ଝିପୁଟ।।

ବନ୍ଦେ ବନ୍ଦେଽହଂ । ବନ୍ଦେ ଶ୍ରୀଗୁରୁବନଜଚରଣକୁ । ଗୁରୁଙ୍କୁ ବୈଷ୍ଣବବୃନ୍ଦଙ୍କୁ । ରୂପ ସହିତ ସନାତନ ଚରଣ ଭଟ୍ଟ ରଘୁନାଥ ଜୀବଙ୍କୁ । ୧ ।

ନିରନ୍ତରେ ଗୋପାଳ ଭଟ୍ଟ ଶ୍ରୀପଦକୁ ରଘୁନାଥଦାସଙ୍କୁ । ଅଦ୍ୱୈତ ନିତ୍ୟାନନ୍ଦଗଣ ଶ୍ରୀକୃଷ୍ଣ ଚୈତନ୍ୟ ଦେବଙ୍କୁ । ୨ ।

ବନ୍ଦେ ଶ୍ରୀରାଧା-କୃଷ୍ଣ ପଦଯୁଗ ଲଳିତାସହ ବିଶାଖାଙ୍କୁ । ତୁଙ୍ଗବିଦ୍ୟା ସହିତ ସଖିବୃନ୍ଦାଦି ବୃନ୍ଦାରଣ୍ୟକୁ । ୩ ।

ଯୁଗଳ କୁଣ୍ଡଳକୁ, ଯମୁନାପୁଳିନକୁ, ରାସସ୍ଥଳୀ ନୀପମୂଳକୁ । ଧ୍ୟାୟେ ଚନ୍ଦ୍ରନାଥ ବଂଶୀବଟ ଗୋପାଳ ଗୁରୁଙ୍କ ନିବାସକୁ । ୪ ।

ରାଗ ଶ୍ରୀ, ତାଳ ଆଡ଼ ।

ବୃନ୍ଦାରଣ୍ୟ ବିହାରି ହେ । ଶ୍ରୀ ନନ୍ଦାତ୍ମଜ । ବୃନ୍ଦାରଣ୍ୟ ବିହାରି । ବୃନ୍ଦାରକ ଉଦ୍ଧାରି । କୁନ୍ଦାରବିନ୍ଦସହ ମନ୍ଦାରମାଳାଧାରି । ୧ ।

ସଜଳ ଜଳଦ ସୁନ୍ଦର । ନିଜ଼ ଶରୀର । ସଜ'ନୀଳୋତ୍ପଳ-ତୁରର । ଦ୍ୱିଜରାଜ ସୁହାସ । ଦ୍ୱିଜ ହୀରକ ସମ । ବ୍ରଜତାପ ନାଶନ । ସୁଜନଚିତ୍ତ ଧାମ । ବୃନ୍ଦା··· । ୨ ।

ମଦନ ଭୁଜମ୍ଭ ଚ ଗୁଣର । ବଦନ ଛବି । କଦର୍ପ ହେଳ
ନାୟକଙ୍କର । ମଦନମୋହନ ଶୋଭା । ହୃଦୟରେ ଭାବି ମୁଁ ଲୋଭା ।
ଉଦୟ ହୁଅ ମୋ ଚିତ୍ତ । ସଦୟ ଭାବେ ମନ୍ତଚେ । ୩ ।

ନିରନ୍ତର କବି ସୁଧାକର । ରଘୁନାଥର । ମୁଚଣ ଶ୍ରୀହରି-
ପଦ୍ମର ହରଷେ ଜନେ ଚିନ୍ତ । ସରସ କରି ଚିତ୍ତ । ଦରଶନ ଦେଇ
ଦେବେ । ଶରଣ ହେଲେ ସନ୍ତ । ୪ ।

ରାଗ ବରାଳି । ଏକତାଳି ।

ଜୟ ବୃଷଭାନୁନନ୍ଦିନୀ ରାଧେ ।
ଜୟ ସୁଷମା ଗୁଣ ବନ୍ଧନ ରାଧେ ।
ଜୟ ବିଷମାଶୁଗ ମାନମୋହିନୀ ।
ଜୟ ରସନାଗର ପଙ୍କଜ ବାସିନୀ । ୧ ।
ନନ୍ଦତନୟ ଜଗଦ୍ ବନ୍ଦନ ମନ୍ଦରଧର ଆନନ୍ଦକାରିଣୀ
ସୁନ୍ଦରୀମଣି ଅରବିନ୍ଦ-ବଦନା ମଦସିନ୍ଧୁର ଗାମିନୀ । ୨ ।
ବ୍ରଜମଣ୍ଡନ ଧନ ସଜନ କୁମୁଦବ୍ରଜରଜନୀକରମନ ଉଲ୍ଲାସିନୀ,
ନଜର ରଖ କୃପାରେ ।
କବିଦ୍ୱିଜରାଜ ରଘୁନାଥକୁ ମନେ ନିଜ ଦାସୀ ବୋଲି ଏ ଦେନି । ୩ ।

## ନାନ୍ଦ୍ୟନ୍ତେ ସୂତ୍ରଧାର ।

ଗଦ୍ୟ । ହେ ନର୍ତ୍ତକଚୂଡ଼ାମଣି । ସୁରମଣୀମଣିବରନ ଗୁଣ-ଗଣ ପଠନ ଗୁଣି । ନାଦ ଶ୍ରୁତି ଚିହ୍ନା-ଘନା ସ୍ଥଳନିକା ଦ୍ୱାବିଂଶ ଷଡ଼୍‌ଜାତି ସପ୍ତସ୍ୱର ଷଡ଼୍‌ଜ ମଧ୍ୟମ ଗ୍ରାମ ମୂର୍ଚ୍ଛନା । ପଞ୍ଚ ସହସ୍ର ଦ୍ୱିସ୍ପତ୍ରିଂଶ ତାନବର୍ଣ୍ଣ ବିବାଦି ବାଦି ଅନୁବାଦି ସମ୍ବାଦି ସ୍ୱର ଜ୍ଞାନ, ନିରନ୍ତମାନ, ମନ୍ଦ୍ରମଧ୍ୟତାର ଅନୁଦାତ୍ତୋଦାତ୍ତ ସ୍ୱରିତ ସାଡ଼ ବାଡ଼ବ ସମ୍ପୂର୍ଣ୍ଣ ଆରୋହଣାବରୋହଣ ସଞ୍ଚରି, ଘନ ନସ୍ତ ଦେଶୀୟ ସ୍ୱରିତ

କାମ୍ବୋଜାଦି ଦଶବିଧ ଗମକ ସାଧକ, ଅବାଧକ ମାଳବ ନଟ୍ଟ ନାଟ
ଆଶାବର ସାବେର ଗୌଣ୍ଡ ପୁର ଗୁଣ୍ଡକେର ମୁଖାବର । ଶ୍ରୀ ବରାଳ
ଭୈରବାଦି ଷଡ଼୍‌ଦଶ ସହସ୍ର ରାଗ ଗାୟକେ, ସୁଖଦାୟକେ ।
ଅନିବଦ୍ଧ ନିବଦ୍ଧ ଚିତ୍ରକଳା ଚିତ୍ରପଦା ଚଞ୍ଚାଳ ଲହରୀ ଆଦି
ଗୀତବେତ୍ତା, ଅଦ୍ୱବାଦ୍ୟ । ତାଳମାର୍ଗ ବିପ୍ୟାଙ୍ଗ ଗ୍ରହ ଜାତିକଳୀ ଲଘୁ
ପ୍ଳୁତ ପ୍ରସ୍ତାରାଦି ଦଶାଙ୍ଗିକ-ଧ୍ରୁବ ମଠ୍ୟକ ରୂପକ ଝମ୍ପ ତ୍ରିପୁଟାଙ୍କ
ଆଟୈକତାଳାଦି ସପ୍ତ ଚଞ୍ଚତ୍ପୁଟ ଚାଚପୁଟ ସିଂହନନ୍ଦନ ଝଙ୍କାର ଗଜ
ଝଙ୍କାର ନାନ୍ଦି କୁନ୍ଦାଦି ଏକୋତ୍ତର ଶତତାଳ ପ୍ରବର୍ତ୍ତି, ଅତିନିବର୍ତ୍ତି ।
ମର୍ଦ୍ଦଳ ମୃଦଙ୍ଗ ମୁରଜ ପଖାବଜାଦି ଆନଦ୍ଧବେତ୍ତା, ଅତିସତ୍ତ୍ୱା, ତମ୍ବୁ
ବଜପୁ ନନ୍ଦ ମହାନନ୍ଦାଦି ବଂଶୀ ବାଦନାଭିଳାଷୀ । ମହତୀ ବୃହତୀ
କଚ୍ଛପୀ ତୁମ୍ବୁରାଦି ବୀଣା ପ୍ରବୀଣ, ଗୁଣଶାଳୀ । ପେରଣି ବହୁରୂପ
ତାଣ୍ଡବ, ଯୌବତ, ହଲ୍ଲୀସକ, ରାସକାଙ୍କୁ କାକତାଦି ଲାସ୍ୟ ନର୍ତ୍ତକେ ।
ସୁଖପ୍ରବର୍ତ୍ତକେ । ପତାକ ତ୍ରିପତାକାର୍ଦ୍ଧପତାକ କର୍ତ୍ତରୀମୁଖ
ମୟୂରାର୍ଦ୍ଧଚନ୍ଦ୍ର ଅରାଳ ଶୁକତୁଣ୍ଡ ମୁଷ୍ଟିଶିଖର କପିତ୍ଥ ଖଟକାମୁଖ
ସୂଚୀମୁଖ ପଦ୍ମକୋଷ ବାଣ ସର୍ପଶିର ସିଂହମୁଖ ଲଙ୍ଗଳାଳପଲ୍ଲବ
ଚତୁର ଭ୍ରମର ହଂସାସ୍ୟ ହଂସପକ୍ଷ ସନ୍ଦଶ ମୁକୁଳୋର୍ଣ୍ଣନାଭ
ତାମ୍ରଚୂଡ଼ୋପଧାନ କଦମ୍ବ ନିକୁଞ୍ଚିତାଦି ବିଂଶ ଅସଂଯୁତ । ଅଞ୍ଜଳି
କପୋତ କର୍କଟ ସ୍ୱସ୍ତିକ ଦୋଳ ପୁଷ୍ପପୁଟୋତ୍ସଙ୍ଗ ଖଟକା ବର୍ଦ୍ଧମାନକ
ଗଜଦନ୍ତ ଅବହିତ୍ଥ ନିଷେଧ ମକର ବର୍ଦ୍ଧମାନାନ୍ତ ତ୍ରୟୋଦଶ ସଂଯୁତ
ତ୍ରିଣିକାର୍ଦ୍ଧ ମୁଷ୍ଟିବୃଷଭ ବୃଷ୍ଟି କଳାଦିଶିଖାଦି ଷଷ୍ଠାର୍ଦ୍ଧହସ୍ତ କେଶବନ୍ଧ
ଲତା ଗରୁଡ଼ପକ୍ଷ ରେଚିତ ପଲ୍ଲବ ତଳ ମୁଖ ବକ୍ଷ ବଞ୍ଚିତ ପକ୍ଷ
ପ୍ରଦ୍ୟୋତକ ଊର୍ଦ୍ଧ୍ୱମଣ୍ଡଳ ଦଣ୍ଡପତାକ ଲଳିତ ବଳିତାଦି ତ୍ରିଂଶ
ନୃତ୍ୟ ହସ୍ତାଭିନୟୀ ସଭିନୟୀ । ମଲ୍ଲରସତଜଭନାଷ୍ଟଗଣ,
ମାଲିନୀ ମାନିନୀ ହରିଣୀ ହାରିଣୀ ବଂଶସ୍ଥା ବସନ୍ତତିଳକ ରଥୋଦ୍ଧତା

ଶାର୍ଦୂଳବିକ୍ରୀଡ଼ିତ ସ୍ରଗ୍ଧରାଦି ତ୍ରୟୋଦଶ କୋଟି ପଞ୍ଚାଶତଲକ୍ଷ ବୃତ୍ତି ପ୍ରବୃତ୍ତି । ଅତିନବୃତ୍ତି । ଋକ୍ ଯଜୁ ସାମାଥର୍ବଚତ୍ୱାରବେଦ ଶିକ୍ଷା କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ, ଜ୍ୟୋତିଷ ଷଡ୍‌ବେଦାଙ୍ଗ ପୁରାଣ ନ୍ୟାୟ, ମୀମାଂସା, ଧର୍ମଶାସ୍ତ୍ର, ଚତ୍ୱାରଉପାଙ୍ଗ ଆୟୁର୍ଦ୍ଧନୁର୍ଗାନ୍ଧର୍ବ ସ୍ଥାପତ୍ୟ ଚତ୍ୱାର ଉପବେଦାଧ୍ୟାୟିନେ, ସୁଖଦାୟିନେ, ଧୀରୋଦାତ୍ତ ଧୀରୋଦ୍ଧତ, ଧୀରପ୍ରଶାନ୍ତ ଧୀରଲଳିତ ଦକ୍ଷିଣାନୁକୂଳ ଶଠାଦି ଅଷ୍ଟଚତ୍ୱାରିଂଶତ୍ ନାୟକ, ଧୀରାମଧ୍ୟା ଧୀରାଧୀରା ପ୍ରଗଲ୍‌ଭାଦି ବିଂଶତି ଚତୁରଶୀତମ ସ୍ୱାଧୀନଭର୍ତ୍ତୃକା ଖଣ୍ଡିତାଭିସାରିକା କଳ-ହାନ୍ତରିତା ବିପ୍ରଲବ୍ଧା ପ୍ରୋଷିତଭର୍ତ୍ତୃକା ବାସକସଜ୍ଜା ବିର-ହୋତ୍କଣ୍ଠିତାଦି ଅଷ୍ଟନାୟିକା ଶୃଙ୍ଗାର ବୀର କରୁଣାଦ୍ଭୁତ ହାସ୍ୟ ଭୟାନକଃବୀଭତ୍ସରୌଦ୍ର ଶାନ୍ତାଦି ନବରସ । ହାବ ଭାବ ଲୀଳା ବିଳାସ କିଳକିଞ୍ଚିତ ମୋଟ୍ଟାୟିତ ବିବ୍ବୋକାଦି ଅଷ୍ଟବିଂଶତି ଅଳଙ୍କାର ବିଷୟିନ ରତିଶୟେ । ଏ ବୈଷ୍ଣବ ଗୋଷ୍ଠୀରେ କି ନର୍ତ୍ତନ କରିବ ହେ । ସୁଖି ବିତରିବ ହେ ସୁଚରିତରେ । କହ କହ ରସ ଭରିତ ହେ ।

ନଟ କହିବାର । ଶତପତ୍ରପତ୍ରନେତ୍ର ପିତ୍ରଜାତିର ବିହାର ଗୋବର୍ଦ୍ଧାରୀ ଚନ୍ଦ୍ର ଚନ୍ଦ୍ରାଧୀପକ ମହାମନ୍ତ୍ରଜାତକେ, ପବିତ୍ର ତନ୍ତ୍ରଧାରେ, ଶୁଣ ଶୁଣ ମତି ଗତି ସାରଧାରେ । ଶ୍ରୀ ରୂପ ନବୈଷ୍ଣବାଦ୍ୱିତ ନିତ୍ୟାନନ୍ଦ ଶ୍ରୀ ଗୌର ଗୋବିନ୍ଦ ଶ୍ରୀ ରାଧା ଶ୍ରୀ ରାଧାକାନ୍ତ ଭକ୍ତି ଭାବଯୁକ୍ତ । ଲଳିତା ବିଶାଖା ତୁଙ୍ଗବିଦ୍ୟାଦି ସଖୀ ମାର୍ଗାନୁସାରି ଯଶ ପ୍ରକାଶ । ଅଦ୍ୱୈତ ମତ ଖଣ୍ଡନ, ଦ୍ୱୈତ ମତ ସ୍ଥାପନ, ବ୍ରହ୍ମସମ୍ପ୍ରଦାୟ ନିଜଭକ୍ତ ସମ୍ପ୍ରଦାୟ ଶ୍ରୀ ବକ୍ରେଶ୍ୱର ପଣ୍ଡିତ ପରିବାର ରଘୁନାଥ କବିଚନ୍ଦ୍ର କରିବାର ଶ୍ରୀ ଶ୍ରୀ ଶ୍ରୀ ରାଧା "ଗୋପୀନାଥ ବଲ୍ଲଭ ନାଟକ" ପାଠବ ବଚନ ରଚନ ନିପାଠଙ୍କରେ ପାଠ କରିଥାଇ ଯେ ବର୍ତ୍ତମାନ ଯେ ନର୍ତ୍ତନରେ ପ୍ରବର୍ତ୍ତିବା ଅନ୍ୟ ବିଷୟରୁ ନିବର୍ତ୍ତିବା ।

ସୂତ୍ରଧାର—ହେ ନର୍ତ୍ତକଚୂଡ଼ାମଣି ଉତ୍ତମୋତ୍ତମ । ଏଥିରେ କାଳ ବା କେଉଁକାଳ ରସ ବା କେଉଁରସ ବର୍ଣ୍ଣନା କରି ଅଛନ୍ତି ଶୁଣିବା ଶୁଣିବା । ଶ୍ରୀରାଧାକୃଷ୍ଣ ଚରିତ ସୁଧା କର୍ଣ୍ଣଦ୍ୱାରେ ସୁଧାରେ ଶ୍ରଦ୍ଧାରେ ପାନକରି ସଂସାର ମରଣି ଗତାସ୍ୱାତ ତୃଷା ବାଧା ହରିବା ହରିବା । ବେଗରେ ତରିବା ତରିବା । ଶ୍ରୀବୃନ୍ଦାବନ ଚକ୍ରବର୍ତ୍ତିନୀ ଶ୍ରୀ ଶ୍ରୀ ଶ୍ରୀ ବୃନ୍ଦାବନଚନ୍ଦ୍ରବର୍ତ୍ତି ପଦାରବିନ୍ଦରେ ଆନନ୍ଦରେ ଗୁରୁ ରୂପ ସଖି ସଖିତରେ ପର-ମଞ୍ଜରୀ ଆନୁଗତ୍ୟରେ ନିତ୍ୟରେ ସତ୍ୟରେ । ସିଦ୍ଧ ଦେହରେ ସ୍ନେହରେ ପ୍ରତ୍ୟହରେ ସେବା କରି କରିବା । ୩ ।

ନଟ—ମନ୍ଦାକ୍ରାନ୍ତା ବୃତ୍ତ ।

ଯା ସେବାରେ ଭବ ବିଧି ରହେ ଯୋଗରେ ଧ୍ୟାନ ହୋଇ ।
ଯା ଶୋଭାରେ ମଦନବଶଗ ପ୍ରେକ୍ଷଣେ ନାଥ ମୋହେ ।
ଯା ସ୍ନେହେ ସେ ବ୍ରଜ ବଧୂ ରହେ ଜାର ହୋଇ ନିତାନ୍ତେ ।
ସେ ଶ୍ରୀରାଧା ପ୍ରଣୟଭରରେ ମୁଁ ଚାହିଁ ନିତ୍ୟ ଚତ୍ତେ । ୪ ।

—ବସନ୍ତ କାଳ ବର୍ଣ୍ଣନା । ମାଳିନୀ ବୃତ୍ତ ।

ବକୁଳ ମୁକୁଳ ପାନେ ପଞ୍ଚମ ଗ୍ରାମ ଗାନେ ।
ପ୍ରବଳ ତ ପିକରାଜ ପୁଷ୍ପରେ ଭୃଙ୍ଗରାଜ ।
ଉପବନେ ବନ ବାସେ କେତକୀ ମଲ୍ଲୀ ବାସେ ।
ପ୍ରସରି ସରିତ ମାର୍ଗେ ଶୀତଳେସ୍ପର୍ଶି ବାତ । ୫ ।

ଅବକଳି ବନମାଳୀ ନୂତନେ ପଲ୍ଲବାଳି ।
ଧରିକରି ବନମାଳୀ ଚୂତ ବୃକ୍ଷେ ପିକାଳି ।
ବିହରିତ ବନମାଳୀ ପୁଷ୍ପରେ ଆଳି ଆଳି ।
ଦରଶନୁ ବନବାଳୀ ଲେଡ଼ିବେ ବାଳ କେଳି ।

ପୃଥ୍ୱୀ ବୃତ୍ତ ।

ବିକାଶ ବନମାଳିକା ବକୁଳ ମାଧବୀ ମଲ୍ଲିକା ।
ଭ୍ରମି ଭ୍ରମି କୁତୂହଳେ ଭ୍ରମର ହୋଇ ସେ ମେଳକା ।
ପ୍ରମତ୍ତ ମଧୁ ବାସରେ ପ୍ରଚୁର କେତକୀ ବାସରେ ।
ଥରେ ମଦନ ବାସରେ ରମଣୀ ନାହିଁ ଯା ପାସରେ । ୭ ।

ମାଳିନୀବୃତ୍ତ ।

କୁସୁମ ସୁସମଜାଲେ ମାତିଲେ ଭୃଙ୍ଗ ଲୋକେ ।
ବକୁଳ ମୁକୁଳ ଲୋକେ ସାରତା ଚୂତ ଡାଳେ ।
ନିନଦ କରି ବିନୋଦେ କାନନେ ସପ୍ରମୋଦେ ।
ବିରହି ବିରହିଣୀରେ ସେ ରବାଧିକ୍ୟ ବାଧେ । ୮ ।

ପୃଥ୍ୱୀ ବୃତ୍ତ ।

ପ୍ରସୂନ ମଧୁ ପାନରେ ମଧୁପ କରନ୍ତି ଗୀତ ସ୍ୱନେ ।
ବିଯୋଗିନୀ ନିକୃନ୍ତନେ ପ୍ରଖର କେତକୀ କୁନ୍ତରେ ।
ସୁଜ୍ଞସବର କେଶରେ କରକ କୁମ୍ଭ ସତ୍‌ପଲ୍ଲବେ ।
ପ୍ରବେଶ ଋତୁ ରାଜନ ପ୍ରବଳ ହୋଇ ବୃନ୍ଦା-ବନେ । ୯ ।

ଗୀତ । ରାଗ କଲ୍ୟାଣୀ । ଆଡ଼ତାଳ ।

ମଧୁ ସମୟୁ ପ୍ରବେଶ । ମନୋହର ବନଦେଶ । ମଧୁର ମଧୁ ଲୋଭରେ ମଧୁପେ ହୋଇଲେ ବଶ । ୧ ।

କିଶଳୟୁ ବିଟପିରେ କା ନ କରେ ଷଟପିରେ । ଅଶନ କରି ବକୁଳ । ଅଥିର କୋକିଳ କରେ । ୨ ।

ବିରହୀ ବିରହିଣୀରେ । ବିକଳ ଅଧିକ ତରେ । ସ୍ମର ମାରଇ ଶରରେ । ସ୍ମରଣ ନ ରଖେ ଧୀରେ । ୩ ।

କୁସୁମ ବାସ ସମୀର । ଯେଣେ ବହେ ଧୀର ଧୀର । କ ସୁଖ ଜାତ ନ କରେ । କାନ୍ତ ସନ୍ନିଧା କାନ୍ତାରେ । ୪ ।

କବ ସୁଧାନିଧି ଭଣି । କମନୀୟ ଶ୍ୟାମ ଗୁଣି । ଅଂବଲମ୍ବେ ପରବାସୁ । ଆସିଲେ ରସିକ ଶ୍ରେଣୀ । ୫ ।

## ମଧୁମଙ୍ଗଳଙ୍କୁ ଶ୍ରୀକୃଷ୍ଣ ।

ଗଦ୍ୟ । ମଧୁର ସମୟ କୁସୁମିତ ଲତା ଲତା ରସାଳ ରସାଳ ଶିଖରିଣୀ । କେତକ କେଶର ପରାଗ ସରାଗରେ ଭ୍ରମରେ ଶୋଭିତ ଭ୍ରମରେ । ପ୍ରବାଳବତ ପ୍ରବାଳ ପାଟଳ ନପାରେ ଦେଖି ପାଟଳୀ ଏ ବାସରେ ସୁମନସବାସରେ କା ମନ ନ ରହେ ସୁବନ୍ତ ପାଶରେ । ୪୦ ।

ମନ୍ଦାକ୍ରାନ୍ତା ବୃତ୍ତ ।

ନାସା ଭାଷା ଶୁକ ପିକ ପରି ନାଳକେ ବକ୍ର ସାମ୍ୟେ ।
କେଶେ ଭୃଙ୍ଗାଳି ଝଟିଲ ନୟନେ କେତକୀ କେତକାଳି ।
ହାସପ୍ରାପ୍ତେ ବକୁଳ ଦଶନେ କୃଷ୍ଣ ବାମା ସମା ଏ ।
ଏ ଶୋଭାରେ ମନ ହର ନ ଏ ହେଜ ରାଧା ପରାଏ । ୧୦ ।

## ଶ୍ରୀକୃଷ୍ଣଙ୍କୁ ପ୍ରତି ମଧୁ ମଙ୍ଗଳ ।

ଗଦ୍ୟ । ଧନ୍ୟ ଧନ୍ୟ ସେ ବର୍ଷାଋତୁ ଭଦ୍ରପ୍ରଦ ଭାଦ୍ରପଦ କୃଷ୍ଣାଷ୍ଟମୀ ତଥି ସନ୍ଧିରେ ଅଧିକ ସତ୍କାର ଲଭନ୍ତ ଅନେକ ଅତିଥି ତବାଭିଷେକ ମହୋତ୍ସବରେ । ବିପ୍ରେ କ୍ଷିପ୍ର କ୍ଷିପ୍ରେ ସପ୍ରେମେ ଭୋଜନ କରନ୍ତ ଯେଉଁ ମହୋତ୍ସବ ରେ । ସେ କ କଥିନ୍ତ ହେବ ପନ୍ନଗରେ । ଖଣ୍ଡ ଖଣ୍ଡ ଖଣ୍ଡମିଶ୍ରିତ ଘନାବର୍ତ୍ତ ଦଧି ଯା ସ୍ୱାଦନରେ ନରେ ତରବେ ସପତ ଉଦଧି । ଜାତିପାଖୁଡ଼ା ସମ ଯେ ଉଖୁଡ଼ା ହେବା ଲଜାବଳ । ଯେ ଭୋଜନ ସମୟେ ତୋଷମୟେ ରଖି ନ ପାରନ୍ତ ଲଜ୍ଜାବଳ ।

ଗୋଧୂମ ଚୂର୍ଣ୍ଣ ପୃଷ୍ଣ ମିଶ୍ରି ମିଶ୍ରିତ ଗଜାନନ ରେ। ନିକ୍ଷେପ କଲ୍‌କାଲ ସୁଖ କି କଥିତ ହେବ ଗଜାନନରେ । କର୍ପୂର ପୂର ପୂରଣ କାକରା ମତ୍ତ ଅତି ମୋଦକରା ସୁପେଷ ମାଷବଟିକା ଯାହା ସୁବାସରେ ଲଗିବ ଛୁଡ଼ିବା ନାଠିକା । ଲଗିଛି ପରିଣତ ସୁବଚନ ବରନାରମ୍ଭା ଯା ଅଧରେ । ସେ କି ପ୍ରଶଂସିବ ସୁବଚନବରନା ରମ୍ଭା ଅଧରେ । ରୁଚକ ପନ୍ଦ ମରିଚ ଲବଣ ସହ ଛନ୍ଦରେ । ଯା ମନ ପୁରୁଛି ସେ ସୁଖରେ ନଗଣିମ ଶର୍ତ୍ତରେ ଯେ ଗୃହି ଆଖିବୁଜ ଆସ୍ୱାଦନ କରୁଛି ଶିଖରଣୀ । ସେ କାହିକି ଗୃହିଁବ ଏ ବକୁଳ ଶିଖରିଣୀ । ସେ ଦିନ ଭୋଜନ ଭାଜନ ଜନପରିପାଟିକି । ଦେଖିଛି ବର୍ଣ୍ଣିବାର ଆସିବ କି ତା ପାଟିକି । ୫୦ ।

### ମନ୍ଦାକ୍ରାନ୍ତା ବୃତ୍ତ ।

ପଣ୍ଡା ପିଣ୍ଡା ତଳକୁ ବସିଲେ ମଣ୍ଡପେ ଶାସମାସେ ।
ଝୁଣ୍ଡେ ଝୁଣ୍ଡେ ବସି ବସିଗଲେ ଚଉରେ ପାଡ଼ି ଧାଡ଼ି ।
ଗଣ୍ଡା ଗଣ୍ଡା ଲଡ଼ୁ ଗଡ଼ୁସମ ଖଣ୍ଡପାକେ ସଜାଡ଼ି ।
ଭେଣ୍ଡା ଭେଣ୍ଡା ଦ୍ୱିଜ ପରସିଲେ ପୂର୍ଣ୍ଣ ତୃଷ୍ଣ ଅନାଡ଼ି । ୧୧ ।

ଚୂର୍ଣ୍ଣିକ । ହେ ସଖେ ! ଚଉଦ ପିଷ୍ଟକ ରହିତ ତବୋଦରେ ଚଉଦ ଗଣ୍ଡା ପିଷ୍ଟକ ନ ରହିଲା ମମୋଦରେ । ହେ ଗୋବର୍ଦ୍ଧନ ! ଗୋବର୍ଦ୍ଧନ ଧଇଲ ବାମ କରେ ଆପଣେ । ଦୁଇକରେ ଧରି ନ ପାରିଲି ମୁଁ ଲଡ଼ୁ ପଣେ । ସଖାପଣ କରି କୃପାଜଳନିଧିରେ ନିଜନିଜ ଦ୍ୱିଜବ୍ରଜ ମଧ୍ୟରେ ବ୍ରଜମଧରେ ମୁଁ ବୁଡ଼ିଗଲି ଝପା ଜଳନିଧିରେ । ଦୀନ ବାନ୍ଧବ ହେ କଦା ସେ ଦିନ ହେବ ହେ । ତବ ମନ୍ତ୍ରୌଷଧି ଦୀକ୍ଷା ଶିକ୍ଷା କରି । ଭୋଜନ କରିବି । ବର୍ଷଯାଏ ହର୍ଷରେ କ୍ଷୁଧା ବାଧାରୁ ତରିବି । ୬୦ ।

### ଶ୍ରୀକୃଷ୍ଣଙ୍କ ପ୍ରସ୍ଥାନ

( ସ୍ୱଗତ )

ଗଦ୍ୟ । ଅଥ ଶାନ୍ତ ଦାନ୍ତ ଧୀମନ୍ତ ନିତାନ୍ତ ସ୍ୱାନ୍ତ ଏକାନ୍ତ ବିହାର ମଧୁହାର । କାଳକାକାନ୍ତ କାଳକାକାନ୍ତ ପର ଦୁରନ୍ତ ବୃତ୍ତାନ୍ତ କୁନ୍ତସମ କେତକୀ । ବସନ୍ତବାସ ବସନ୍ତବାସ ବନ ବିଲୋକ ଅତ୍ୟନ୍ତରେ ସନ୍ତାପରେ । ଚିନ୍ତାମଣି ଚିନ୍ତାମଣି କାନ୍ତାମଣି । କୁମୁଦ ବନ୍ଧୁ କାରବିନ୍ଦ କୁନ୍ଦଗନ୍ଧଫଳ ମନ୍ଦାର ସିନ୍ଧୁବନ୍ଦନ ଚନ୍ଦନ ଗନ୍ଧବନ୍ଧ ସମ ହାସ ଅଧର ମୁଖ ଦଶନ ନାସା ବଦନ ଗମନ ଗମ୍ଭୀର ଶୀତଳ ଅଙ୍ଗରେ । କହିବାରୁ ଭଙ୍ଗୀରେ ଚତୁର ଉତ୍ତର ଅନୁସନ୍ତରେ । ଅତରେ ଆତର ପନୀର ନୀର ଗନ୍ଧସାର ଲଲ ଗୁଲାଲ ଅବିର ବସନ୍ତ ବସନ୍ତକାଳୋଚିତ କ୍ରୀଡ଼ାକୁ ବ୍ରୀଡ଼ାବନ୍ତ ବନ୍ତିଶଲକ୍ଷଣା । କଳାପ କଳାପମଣ୍ଡନ ସଙ୍ଗରେ ରଙ୍ଗରେ । ଖେଳିବାକୁ ବୃନ୍ଦାବନ ବନେ ସକଳ ସମ୍ଭାର ଦେବାରୁ କୁମ୍ଭିକୁମ୍ଭଉରୋଜା । ଅଦମ୍ଭରେ ଦମ୍ଭରେ ଜମ୍ଭାରମଣିଦ୍ୟୁତି ସମ୍ଭାଷଣାବ୍ଦ ସମ୍ଭାଳ ସମ୍ଭାଳ ଚର୍ଚ୍ଚରି ପ୍ରହାରି ପ୍ରହାରି ଖେଳରେ ମେଳରେ ଲୋଳରେ ପ୍ରବଳରେ କେବଳରେ ନଖାନଖି ମୁଖାମୁଖି ହସ୍ତାହସ୍ତି ହୋଇ ପ୍ରୀତିରେ ରାଧାଦି ସହଚରୀ । ଯମୁନା କୂଳରେ ଅନୁକୂଳରେ । ଖେଳିଲେ ଚର୍ଚ୍ଚରୀ । ୭୦ ।

ଗୀତ । ରାଗ ବସନ୍ତ । ଏକତାଳ ।

ଶ୍ରୀରାଧା ସଙ୍ଗରେ । ଶ୍ରୀହରି ରଙ୍ଗରେ । ହୋରି ଖେଳିଲେ ସୁଧାରେ ଶ୍ରୀପଦ ଗାନକରେ କେ ଚହିଁ ବସନ୍ତ ରାଗରେ ମନ୍ଦ୍ର ମଧ୍ୟ ଦ୍ରୁତ ତାନରେ । ତା ଥା ଥେଇ ଥେଇ ମୃଦଙ୍ଗ ବାଜଇ ମନ୍ଦ୍ରମଧ୍ୟ ଦ୍ରୁତ ମାନରେ ଶ୍ରୀ । ୧ ।

ଢଙ୍ଗିମା ରଙ୍ଗିମା ପୁରଟେ ରତ୍ନ ରତ୍ନ ଭୃଙ୍ଗ ବିଦ୍ୟା ନାନା ବାଦ୍ୟେ । ମୋହନ୍ତ କରିବାରେ ଇନ୍ଦୁ ଲେଖା ମୁଖ ଇନ୍ଦୁଢ଼ାଳ ନାଚେ ମଧ୍ୟେ । ଶ୍ରୀ । ୨ ।

ହନ ହନ ବୃନ୍ଦ ବୃନ୍ଦ ସୁନ୍ଦରୀ ନନ୍ଦ ଲଲକୁ । ଚୂଆ ଚନ୍ଦନ ଅତର ପମର ଅବର ସଙ୍ଗେ ଗୁଲ୍ଲଲକୁ । ଶ୍ରୀ । ୩ ।

କେ ଛାଲେ ବଳେ କେ ଛଳେ କୁତୂହଳେ ମୋହନ ମୁରଳି ଛଡ଼ାଇ । ଚଞ୍ଚଳେ ଅଞ୍ଚଳ ଧରି କରି ବନମାଳୀ କାହାକୁ ଧରନ୍ତି ଗୋଡ଼ାଇ । ଶ୍ରୀ । ୪ ।

ରାଗ ହୃଷ୍ଟେମି । ଆଡ଼ତାଳି ।

ହୋରିରେ ହରି ଗୋପୀଙ୍କ ସଙ୍ଗେ । ବୃନ୍ଦାବନେ ବିହରି ସୁରଙ୍ଗେ । ପଦ ।

କେଉଁ ଗୋପିକା ଦେହେ ଫଗୁମାରି ସ୍ନେହେ କାହା ଦେହେ ଅତରକୁ ଢାଳି । କାହାର ସୁନ୍ଦର ମନ୍ଦର ଉରଜରେ ଚୂଆ ଚନ୍ଦନ ଦିଅନ୍ତି ବୋଳି । ୧ ।

କାହାର କର ଧରି କହନ୍ତି ମୁରାରି । ରଖ ରଖ ଭ୍ରୁ ନବକଶୋରି । କାହା ପଣନ୍ତ ଧରି କୁଞ୍ଜକୁ ଓଟାରି ମଦନ ସଂତାପକୁ ଦିଅନ୍ତି ବାରି । ୨ ।

କେଉଁ ରସବନ୍ତି କାମେ ହୋଇ ଉନ୍ମତ୍ତି ଉରଜ ଉରରେ ଦିଏ ଠେଁସି । କାହ୍ନୁଁ କାହ୍ନୁଁ ବାଳୀ ପାଞ୍ଚ ସାତ ମିଳି କରୁ ଛଡ଼ାଇ ନିଅନ୍ତି ମୋହନ ବଂଶୀ । ୩ ।

ରମଣି ମଧ୍ୟେ ଶ୍ୟାମ ହେମ ମରକତ ସମ ଶୋଭା କହିବ ଅବା କେହ୍ନ । ରଘୁନାଥ କହେ ବାଧା ହରିବ ନିରତ ରାଧା ମଦନ ମୋହନ ପଦକୁ ଧ୍ୟାଇ । ୪ ।

ରାଗ ଘଣ୍ଟାରବ । ଏକତାଳି ।

ମାତଲେ ହରି ରାଧା ସଙ୍ଗେ ।
ମୋଦରେ ହୋରିରେ ରଙ୍ଗରେ । ପଦ ।

ଚୂଆ ଚନ୍ଦନ ଅତର ଗୁଲାଲକୁ ।
ଜୋରରେ ବୋଳ ବୋଳ ଅଙ୍ଗରେ । ୧ ।

କୁଞ୍ଜେ କୁଞ୍ଜେ ସୁରସରେ ବିହରିଲେ ରଞ୍ଜନେ ମଦନ ତରଙ୍ଗରେ ।୨।
ନାଗରୀ କିଶୋରୀଙ୍କି ବାମ ଭାଗେ ରଖି । ନାଚିଲେ ମଧୁର ତ୍ରିଭଙ୍ଗୀରେ ॥

ଦୁହେଁ ଦୁହିଁଙ୍କି ମାନସ ତୋଷିଲେ ।
ମୋହନଂ ଲଳିତ ଭ୍ରୁ ଭଙ୍ଗୀରେ । ୪ ।

କହେ ରଘୁନାଥ କବି ନିଶାନାଥ ।
କୃଷ୍ଣଚରିତ ସୁପ୍ରସଙ୍ଗରେ । ୫ । ୭ ।
ମଟୂନଙ୍ଗଲଙ୍କ ପ୍ରସ୍ଥାନ ।

## ଶ୍ରୀକୃଷ୍ଣଙ୍କ ପ୍ରତି ରାଧା

ରାଗ ଆଶାବରୀ । ଆଡ଼ତାଳି ।

ଆଜ ବାଟ ଓଗାଳି । ହଠ ନ କର ବନମାଳି ହେ । ପଦ ।
ହେଲା ଉଜୁର । ଯିବି ଏଥର । ଟୂଜିବ ମୁଁ କରମାଳି ହେ । ୧ ।
ଏ ଠାପରକୁ ସହି ଯିବାକୁ । ମୁଁ ନୁହଇ ଚନ୍ଦ୍ରାବଳୀ ହେ । ୨ ।
ପଦ୍ମାଦି ସଖି । ଦେଖି ନ ସହି । ଦେବେ ସିନା କରତାଳି ହେ ।୩।
ଏପରି ଗଲେ । ଅଟକ କଲେ । ରହିବେ କି ସଙ୍ଗ ଅଳି । ହେ ।୪।
ନିଶା ମୁଖରେ । ନ ଗଲେ ଘରେ । ଶାଶୁ ଦେବେ ସିନା ଗାଳି ହେ ।୫।
ଭଙ୍ଗି ଭ୍ରମର । ଦେଖିଲେ ମୋର । ପଦ ହେଉ ନାହିଁ ଚଳି ହେ ।୬।
କହେ ରଘୁନାଥ କବି ନିଶାନାଥ । ଯାଇ ରାଧା କୃଷ୍ଣକେଳି ହେ ।୭।୮

## ଶ୍ରୀକୃଷ୍ଣଙ୍କର ସଖୀମାନଙ୍କର ଉକ୍ତି ପ୍ରତ୍ୟୁକ୍ତି

ରାଗ ଆଶାବରୀ । ଆଡ଼ତାଳ ।

ସଖି— ଦୂରରେ ରହ ହେ ଜାର କଂଶାର ।
ନଛୁଁଅ ଶ୍ରୀଅଙ୍ଗ ରାଜସୁତାର । ୧ ।

କୃଷ୍ଣ—ସୁର ତରଙ୍ଗିଣୀ ଭାବରେ ମଜ୍ଜି ।
ମୋ' ମନ କଳୁଷ ଦେବ ମୁଁ ତେଜି । ୨ ।

ସଖୀ—ଯାଅ ହେ ଚନ୍ଦ୍ରାବଳୀ କେଳିକୁରଙ୍ଗ ।
ତୁମ୍ଭଙ୍କୁ ମିଳିବ କି ଶ୍ରୀରାଧା ସଙ୍ଗ । ୩ ।

କୃଷ୍ଣ—ରାଧା ଶ୍ରୀମୁଖ ସୁଧା ନିଧି ଲୋଭରେ ।
କୁରଙ୍ଗ ହୋଇଛି ମୁଁ ଜାଣ ଭାବରେ । ୪ ।

ସଖୀ—ପରବଧୂକୁ ଏବେ ଛୁଇଁବ ଯେବେ ।
ରାଜା କରରେ ଦଣ୍ଡ ଲଭିବ ତେବେ । ୫ ।

କୃଷ୍ଣ—ବାହୁପାଶରେ ବାନ୍ଧି ନଖ ରଦ ଘାତେ ।
ଦଣ୍ଡ ଦେବାକୁ ଥିଲେ ଦଣ୍ଡ ଦିଆତ ମୋତେ । ୬ ।

ଏପରି କଉତୁକେ କେଳିକି ବଞ୍ଚି ।
ଅଶୋକ-କୁଞ୍ଜରେ ସଙ୍କେତ ଦେଇ । ୭ ।

ଯେ ଯାହା ମନ୍ଦିରେ ପ୍ରବେଶ ହେଲେ ।
ଏ ଭାବ ଚିନ୍ତି ଦ୍ୱିଜ ରଘୁନାଥ ବୋଲେ । ୮ ।

## ଶ୍ରୀରାଧା ବିଶାଖାଙ୍କୁ ପ୍ରତି

ଶାର୍ଦ୍ଦୂଳ ବିକ୍ରୀଡ଼ିତ ବୃତ୍ତ

ଅଟ୍ଟାଳିକେ ମୋଦରେ ଦେଖନ୍ତେ ମୋ ଭାଗ୍ୟ କାଦମ୍ବିନୀ
ବିଦ୍ୟୁତ୍କାନ୍ତି ବକାଳି ଅଦ୍ଭ ମନ୍ମଥବାକୋଦଣ୍ଡ ସଙ୍ଗେ ଲଥି ।

ବର୍ଷାରମ୍ଭ କଳକ୍ଷଣେ ପ୍ରବଳରେ କାହ୍ନ ବଳେ ବେଗରେ ।
ରହୁଁ ରହୁଁ କଲଟି ଦୂରକୁ ସଖୀ ଦୁର୍ଯୋଗ ଝଞ୍ଜାନଳ । ୧୨ ।

ଟୀକା—ଆଶାବୃନ୍ତକ ମୋଦରେ କ ମୋଦ କହିବା ବିଷୟରେ ।

ଗୀତ । ରାଗ ସୁରଟ । ଆଡ଼ତାଳ ।

ଶୟନେ ସ୍ୱପନେ ଦିଶୁଛ ସେହି ସତେ କି ରୂପ ଦେଖିଲି, ସହି ଯମୁନା କୂଳରେ ଯାଇ । ପଦ ।

ଅକଥିତ ତା ଚରିତ, ଅଲଂଘ୍ୟ ପର୍ବତ ବରତ । କରି ପାରଇ ସେ ହିତ, ନେହାନ୍ତ ନଗୁଇ । ଆହୁରି ଅନ୍ୟାୟ ରୀତି । ହରି ନିଏ ନିତି ନିତି । ମନ ଧନ ଯତନରେ ଥିଲେ ହେଁ ଲୁଗ୍ଭଇ । ୧ ।

ଗୁହିଁଲେ ଆନ ନ ଦିଶେ, ଦିଶେ ତା ବଦନ ଦିଶେ, ନୟନ ବୁଜିଲେ ଅନ୍ତରେ ପ୍ରକାଶୁଛି । କା ଆଗେ କହିବି ମିତ, କେ ଏହା କରିବ ସତ । ବାହାରେ ଭିଡ଼ିବାକୁ ସେ ବାହାରେ ଆସୁଛି । ୨ ।

ଯିବି ମୁହିଁ ଯେଣେ ଯେଣେ । ଧାଉଁଛି ସେ ତେଣେ ତେଣେ । ଆଗେ ଆଗେ ରହି ରହି ପଥ ଓଗାଳୁଛି । କଗୋ ମା ଏ କି ବିଷମ । କରିବା ଗୋ କି କରମ ତା ଆଚରଣେ ଚରଣ ପଦେ ନ ଚଳୁଛି ।୩।

ଯେତେକେ ହେଲେ ନିବର୍ତ୍ତି । ରହିବି ବୋଇଲେ ଦୂତି ପୁନରପି ଦେଖିବାକୁ ନେହ ତ ଝୁରୁଛି । ରାଧା ଦୁଃଖ ହେବାବାଣୀ ଶୁଣି ରଘୁନାଥ ଭଣି, ରାଧିକେ ଏଥୁ ଅଧିକେ ତତେ ସେ ଝୁରୁଛି । ୪ ।

ରାଗ ମୂଲତାନ । ଆଡ଼ତାଳ ।

ସହିରେ ସେ ଶ୍ୟାମ ସୁନ୍ଦର ରୂପ । ବୃନ୍ଦାବନେ ଆହା ଯାହା ମୁଁ ଦେଖିଲି କରିଥିଲି କେତେ ଜପ । ମୋ ସହିରେ । ପଦ ।

ସେମୂରତ୍ତି ଦେଖି, ହୋଇ ଅତି ସୁଖି । ଚିତ୍ତ ପିରତି ବାଞ୍ଛିବ । କାମ ନିରେଖିଲେ । ବାମ ହୋଇଭଲେ । ବାମଦେବେ ପ୍ରଶଂସିବ ମୋ ସଙ୍ଗରେ । ୧ ।

ରଙ୍ଗିମା ଅଧରେ ମୁରଲୀ କି ଧରେ । ତ୍ରିଭଙ୍ଗି ଭଙ୍ଗିମା ଠାଣି । ପତିବ୍ରତା ବ୍ରତ କରିପାରେ ହତ । ତା ବଙ୍କିମ ଅନାଉଣି ମୋ ସଙ୍ଗରେ । ୨ ।

ତା ଶ୍ରୀମୁଖ ଗୋଟି । ଅକଳଙ୍କ କୋଟି, ଶଶଧର ଜିଣି ଶୋଭା । କେଉଁ କୁଳନାରୀ କୁଳ ପରିହରି ନୋହିବେ ଲୋଭା ମୋ ସଙ୍ଗରେ । ୩ ।

ଶ୍ୟାମ ଦରଶନେ ଛନ ଛନ ମନେ ରହେ ଶ୍ରୀକିଶୋରୀଚନ୍ଦ୍ର । ରଘୁନାଥ ଭଣି । ସଖୀ ସେହି କ୍ଷଣି । କହେ ଶ୍ରୀକୃଷ୍ଣ ଚରିତ ମୋ ସଙ୍ଗରେ ।

ସଖୀ ଉକ୍ତି । ପୃଥ୍ୱୀ ବୃତ୍ତ ।

କିଶୋରମଣି ଜାଣ ରେ କିତବ ନୋହିବ ଶାରଣି ।
କିଶୋର ତବ ଶ୍ରବନେ କଦନ ପାଉଛନ୍ତି ପ୍ରିୟେ ।
ଆଶୋକସୁମବାଣରେ ଅତନୁ ମାରିବାରେ ଦୃତେ ।
ତୋସୋଦୟ ମନେ କରେ ରମଣି ଆସ କୁଞ୍ଜେ ଯିବା ।

ରାଗ ଘଣ୍ଟାରବ । ଏକତାଳି ।

ସଙ୍ଗିମା ତୋ ପ୍ରୀତି ପେନ ମୋହନ ନିରନ୍ତେ ଝୁରୁଛି ରେ । ପଦ ।

ଗୋଷ୍ଠରେ ତୋର ଗୁଣଗଣ ଗୁଣି ଗୁଣି ନୟନୁ ଲୋତକ ଝରୁଛି ରେ । ଫୁଲଶର ଅତନୁ ମାରବାରୁ ସୁତନୁ ତା ତନୁ ଅଥିରେ ଥରୁଚି ରେ । ୧ ।

ସନ୍ତୁଟର ହାର ପୂର ତାହାର ଆହାର ହେଲଣି ଅରୁଚରେ । କୁଞ୍ଜର-ଗମନରେ କୁଞ୍ଜରେ ବସି ଧୀରେ ତୋ ନାମ ଗାନ କରୁଚ ରେ । ୨ ।

କଳକଳ କୋକିଳବାଣୀରେ କେବଳ ବିବେକ ପଣର୍ନି ସନ୍ନ୍ରଚରେ । ମନ୍ଦ-ଗନ୍ଧ-ଶୀତପବନ ବନ୍ଧୁ ମିତ ଦେହରୁ ଚେତନା ହରୁଚ ରେ । ୩ ।

ଆସ ଆସ ସଖି ହାସ ମନେ ନ ରଖି ତା ଲାଗି ତୋ କର ଧରୁଚ ରେ । ରଘୁନାଥ ନତ ଯୁଗଲରସେ ମତ ବଳାଇ କି ଅନୁସରୁଚ ରେ । ୪ ।

## ଅନ୍ୟ ଦୃଶ୍ୟ

---

### ମଧୁମଙ୍ଗଳଙ୍କୁ ଶ୍ରୀକୃଷ୍ଣ ।

ବୃଥି ବୃତ୍ତ ।

ଖରାଂଶୁତନୟା ତଟେ ବନନରେ ସୁଭଗ୍ୟୋଦୟେ ।
ସରଗବଶରେ ଶଶୀ ସଖିସମୂହ ତାହାନ୍ତକେ ।
ପୁରକୃତ ତପେ ସତେ ମନଚକୋର ତୋଷେ ଥିଲ ।
ଅବଢ ବନ୍ଧୁଯୋଗରେ ପ୍ରତିପଦା ତ ଦୂରେ କଲ ।

ରାଗ ଆନନ୍ଦଭୈରବ । ତାଳ ତ୍ରିପୁଟା

ଆହା ହେବ କି ବୁଧି । ଯାହା ଦେଖିଲି କରୁଁ ଜାଣି ଜାଣି ମୁଁ ନଧି । ପଦ ।

କରେ ଥିଲ ଚନ୍ଦ୍ରାବଳ୍ଲୀ । କାମ ମୂର୍ତ୍ତି କୋହ୍ଲ । ୧ ।

ଯୁବତି ଏହାମତ । ଛବିରେ ହରନ୍ତ ଚିତ୍ତ । ୨ ।

କଂକେଳି-କୁଞ୍ଜରେ ବୋଲି । ସଙ୍କେତ ଦେଲି ନକଲି । ୩ ।

କହେ ରସେ ରଘୁନାଥ । କୁଞ୍ଜେ ବସି ଦେଖ ପଥ । ୪ ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ହା ଲୀଳାବତି ହା ସୁବର୍ଣ୍ଣବରଣେ ହା ଚନ୍ଦ୍ରବିମ୍ବାନନେ ।

ହା ଲୋଲାଯୁତଲୋଚନେ ପ୍ରିୟୁତମେ ହା ଭାବନେ ଶୋଭନେ ।

ହା ଲଜ୍ଜାଗୁଣଭୂଷଣେ ସୁରସିକେ ମଦ୍‌ବକ୍ଷହାରୋତ୍ତମେ ।

ହା ଲକ୍ଷ୍ମୀଗଣସେବିତେ ମମ ହ୍ୱିତେ ପ୍ରାଣାଧିକେ ରାଧିକେ ।

ରାଗ ଆହାରି । ଏକତାଳି ।

ଆହାରେ ନବୀନା ନବୀନା । ପଦ ।

କୁନ୍ଦନ ହେମଗୋରି । କମନୀୟ କିଶୋରି । କୁନ୍ଦଦଶନ ଅରବିନ୍ଦରୁଚିରବଦନ । ୧ ।

ସାହା ନୋହିଲେ ମୋତେ । ସୁରସିକା ଜଗତେ । ଆହା ବୋଲିବ କେହି ଆରତ ଦେଖି ସତେ । ୨ ।

କେଉଁ କରମ କଲି । କିମ୍ପା ବୁଧି ହୁଡ଼ିଲି । ଏଡ଼େ ଦୟାନ୍ତ ଲଭି, ଇଚ୍ଛା ପୂର୍ଣ୍ଣ ନ ହେଲି । ୩ ।

କହଇ ରଘୁନାଥ । କବି ରଜନୀନାଥ । ରହରେ ରହି ଏହା କହିଲେ ନନ୍ଦସୁତ । ୪ ।

ମାଳିନୀ ବୃତ୍ତ ।

ଅଥ ନିଶୀଥିନୀଯୋଗେ ଧ୍ୱାନ୍ତ ଗାଢ଼ପ୍ରଭାବେ ।

ଜନ ଗହଳ ନିବର୍ତ୍ତ କ୍ଷେମଭାବେ ସନ୍ତୁଷ୍ଟେ ।

ସକଳ ସଖି ସମୋଦେ କେଶ ବେଶାଦି ସାଜି ।

ହସି କହୁଛ ବିଶାଖା ଶ୍ରୀକିଶୋରୀଙ୍କୁ ବାଣୀ ।

ରାଗ-ପରଜ । ଆଡ଼ତାଳି ।

ପିବା ଚଳ ପରାଣସଙ୍ଗିନି ଉଠି ଆରେ । ଦିଶୁଥିବ ଶ୍ୟାମ ବାମ ପାଖ ପଡ଼ିଆରେ । ପଦ ।

ବ୍ରଜ ହାଟ ବାଟ ହେଲଣି ନିଘୁଞ୍ଚ, ବସିଥିବେ ଶ୍ୟାମବନ୍ଧୁ ନିକୁଞ୍ଜ ଦୁଆରେ । ୧ ।

ପବନେ ପଲ୍ଲବ, ଚଳିଲେ ମାଧବ, ପଥ ଗୃହୁଁଥିବେ ଧରି କେଶରପୁଆରେ । ୨ ।

ଆଜ ହେବା ସଜ, ପରାର୍ଦ୍ଧେ ତଞ୍ଜନ, ନିଉଚ୍ଛାଇ ହେବେ ହୋଇ ପଦ ତଳିଆରେ । ୩ ।

ଗୃହୁଁ ଉଷଧୀଶ, ହେବଟି ପ୍ରକାଶ, ଖନ୍ତୁ ଖନ୍ତୁ ଡାକିବେ ତ କୁକୁଟ କୁଆରେ । ୪ ।

ଯାମେ ହେଲ ଆସି, ଉଠାଉଛୁ ବସି, ଶୁଣୁ ନାହୁଁ ଅଛନ୍ତି କୁଞ୍ଜେ ଏକୁଟିଆ ରେ । ୫ ।

ଆଲୀ କର ଧରି, ଶ୍ରୀନବ କିଶୋରୀ, ଗୋପାଳ-କୃଷ୍ଣ ଭଣେ ଏହି ଟି କାଳିଆ ରେ । ୬ । ୧୧ ।

ମାଳିନୀ ବୃତ୍ତ ।

ରଜନି ସଜନି ସଙ୍ଗେ ଭଙ୍ଗି ନର୍ମୋକ୍ତି ରଙ୍ଗେ ।
ଛମ ଛମ କି ନିବାଡ଼େ ଯୋଗ୍ୟ ବେଶାଦି ସାଜି । ୧୨ ।
ହରି ପରିଣତ ସେବା ପ୍ରୀତି ତା ଭାବ ଭାବି ।
ମିଳି ସକଳ ସଖୀଙ୍କ ଯାଇ କଙ୍କେଳି କୁଞ୍ଜେ । ୧୩ ।

ସୂତ୍ରଧାର—ବସନ୍ତତିଲକା ବୃତ୍ତ ।

କୁଞ୍ଜାଳୟସ୍ଥ ବସନ-ଭୂଷଣ ନାଗବଲ୍ଲୀ ।
କର୍ପୂର ପୁଷ୍ପତଳପାଦ୍ୱ ବିତାନ ସାଜ ।
ଜାଳି ପ୍ରଦୀପ ବସି ବର୍ତ୍ମନ ଚାହିଁ ଚାହିଁ ।
କୃଷ୍ଣାଭିବାଳସ ସୁଭଟିତ ଭଷି ରାଧା ।

ପୁଣି—ସେ ଶ୍ୟାମସୁନ୍ଦର ତନୁ ପ୍ରଣୟ୍ୟାବ ଲୋକେ ।
ମୋ କାମତୃଷ୍ଣ ନିଶିରେ କରିବେ କି ଆସି ।
ଶୋଭିତରବିନ୍ଦବଦନେ କୁଟିଳାଳକାରେ
ଲୋଭ କି ନୋହିବ ସତେ କୁଳକାମିନୀ କେ । ୧୪ ।

ରାଗ ଆହାରି । ଆଡ଼ତାଳି ।

ଶ୍ରୀରାଧା—ଶ୍ୟାମବନ୍ଧୁ ଏ ନିଶିରେ ଆସିବେ କି ଗୋ । ସଙ୍ଗିନି । ପଦ ।
ଏ ମଦନ କଦନକୁ ନାଶିବେ କି ଗୋ । ।
ପଲ୍ୟଙ୍କରେ ନିଃଶଙ୍କରେ ବସିବେ କି ଗୋ । ସ । ୧ ।
ମୋତେ ଦେଖି ତୋଳା ତାଳି ହସିବେ କି ଗୋ । ।
ରଙ୍ଗେ ମୋ ଅଙ୍ଗରେ ଖେଳେ ମିଶିବେ କି ଗୋ । ସ । ୨ ।
ହରଷେ ସରସେ ବାଣୀ ଭଣିବେ କି ଗୋ । ସ । ୩ ।
ଶ୍ରୀମଣି ମନ୍ତ କି ସେ ଉଲ୍ଲାସିବେ କି ଗୋ । ସ । ୪ ।
ଦ୍ୱିଜରଘୁନାଥ ବୋଲେ ତୋଷିବେ କି ଗୋ । ସ । ୫ ।

ମନ୍ଦାକ୍ରାନ୍ତା ବୃତ୍ତ ।

ଚାହୁଁ ଚାହୁଁ ଉଚିତ ହରିତେ ସେ ହରି ମାର୍ଗ ମୁଁ ଯେ ।
ଯାମେ ଯାମେ ସଜନ ରଜନୀ ଯାଉଛି ଭୋଗ ହୋଇ ।
ପ୍ରେମେ କାହିଁ ନ ରହି ସତ ଗୋ ଯାମିନୀ ଥାଉଁ ଥାଉଁ ।
ଆସିବେ କି କହ କହ ମତେ ନନ୍ଦସୂନୁ ପ୍ରସନ୍ନେ । ୧୫ ।

ରାଗ ଆହାରି । ଆଡ଼ତାଳି ।

ଆସିବେ । ମତେ ତୋଷିବେ । ସତେ କି କାନ୍ତ । ପଦ ।
ନିଶି ରସି ମୋଦେ । ମିଶି ମୋର ହୃଦେ ।
ହସି ହସି ପଦେ । ଭୂଷିବେ ସାନନ୍ଦେ । ଆସିବେ । ୧ ।

କାମ ଫୁଲଶରେ । ବାମ ହୋଇ ମୋତେ, ଯାମ ଯାମ କରେ ।
ଝାମ ଦେଉଛନ୍ତି ବାରେ । ଆ । ୨ ।

ଏ ମଧୁ କାଳରେ । ପ୍ରେମରେ ଖେଳରେ ।
ମୋହନ ମୋହ୍ନବାରେ । ଶ୍ୟାମବନ୍ଧୁ ଥରେ । ଆ । ୩ ।

ଭାବ ରଘୁନାଥ କବି ନିଶାନାଥ ଏ ବିଧି ରଚିତ ।
ଅବଲମ୍ବେ ସେ ତ । ଆ । ୪ । ୧୩ ।

ପୃଥ୍ୱୀ ବୃତ୍ତ ।

ରସାଳ କନ୍ଦ ଛନ୍ଦରେ ରଖି ସଖୀ ଲତାସଦ୍ମରେ ।
ପ୍ରସନ୍ନ ମଧୁରାତିରେ ରହି ସୁମାରରେ ପ୍ରୀତିରେ ।
ତୁଷାର-କର-ଆନନେ ହରସୁଁ ଚୁମ୍ବିଲେ କାରସେ ।
ବସାଇ ସହି ଚେଜଲେ କପଟ-କୃଟ ଜାଗରଣୀ । ୧୨ ।

ରାଗ ମୁଖାରୀ । ଆଡ଼ତାଳି ।

କେତେ କହିଥିଲେ ମା । ଏତେ ସବୁ କରି ଦେଲେ ମା । ସତେ ସେ ଆସିବେ ବୋଲି । ଚିତ୍ତେ ତୋଷ ହୋଇଥିଲି । ହିତେ ତାଙ୍କୁ ଗଣିଥିଲି । ପ୍ରତେ କରି ମୁଁ ଭାବିଲି । କେତେ । ୧ ।

ଦୂରକଲେ ମା । ସେ ରସିକ ପାଶୋରିଲେ ମା । ବାରୁଁ ବାର ଫୁଲଶର । ଶର କରଇ ପ୍ରହାର । ଭାର ଦେଲାନି ସୁଚିର । ମୋର କି ଗତି ଏଥର । କେ । ୨ ।

ଆଶା ଗୃହିଁ ମା । ନିଶା ଯାକ ଥିଲି ରହି ମା । କଷା ନ କରି ନୟନ ଆଶା କରି ହେଲି ଘାନ । ବୃଥାଇ ବଇରଜନ । ଉଷାଇଲେ ଶ୍ୟାମଘନ । କେ । ୩ ।

ସବୁକଳରେ । ଭାବ ରାଧା କହ୍ନୁ ଦୃଷ୍ଟି ରେ । କବିଚନ୍ଦ୍ର ରଘୁନାଥ ଅବଲମ୍ବେ କହେ ସତ । ସେ ବିଜୟ କରିବେତ ଏ ବିଚ୍ଛେଦ ଯିବ ମିଛ । କେ । ୪ । ୧୪ ।

ମାଳିନୀ ବୃତ୍ତ ।

ମିଛ କହି ହିତବାଣୀ ଭାଣ୍ଡିଲୁ ରାଣି ଦେଇ ।
ନଟ କୁଟିମ ନିଶାରେ ଛନ୍ଦ ଏହି ନିଶାରେ ।
ଘନ ବନକୁ ଅଣାଇ ସାଧ୍ୱୀ ଧର୍ମ ଖସାଇ ।
କିତବ କୃ ନ ବଶାଇ ଦେଲୁ ବୈଶ୍ୟ ବୃଥାଇ । ୧୭ ।

ରାଗ ଆନନ୍ଦଭୈରବ । ଏକତାଳି ।

ସଜନୀ ପ୍ରେ ଦଶା ମୋର ତୋ ସେନ । ଆସିବେ ବୋଲି ଜଗାଇ ଦେଲୁ ଯା ଆଜ ରଜନୀ । ପଦ ।

କଲୁ ଛାଡ଼ା ଅ.ନ । ଦେଲୁ ଯେତେ ଆନ । ମୋର ଅଭିମାନ କରାଇଲୁ ମ୍ଳାନ । ମୁଁ ସଖି-ପଣକୁ । ନ ଗଣେ ଜଣକୁ । ଏବେ ଚାଡ଼ା ହେଲି ହାନି ଗୋ । ସ । ୧ ।

ହେତୁ ବଳାଇଲୁ ମନ ଝୁଲାଇଲୁ । ମତେ ଛଳାଇଲୁ । ଦୁଃଖେ ଦଳାଇଲୁ । ଏବେ ତୋର କଥା । ହୋଇଗଲା ବୃଥା । ଆସିଥିଲି ସତ ମାନି ଗୋ । ସ । ୨ ।

ପାଇ ତୋ ଆଦେଶ, ହୋଇ ମୁଁ ସୁବେଶ, ପିନ୍ଧି ନୀଳବାସ । ଲଭିଥିଲି ତୋଷ । ଗୃହିଁ ପ୍ରିୟ ଆଶା । ମୋର ପ୍ରିୟଆଶା, ହୋଇ-ଗଲା ପିନା ମ୍ଳାନ ଗୋ । ସ । ୩ ।

ପୁରେ ରହିଥିଲ । କାଳ ବଞ୍ଚିଥିଲ । ଏଥିକି ଆସିଲି ଚନ୍ଦ୍ରାରେ ଭାଷିଲେ । କହେ ରଘୁନାଥ । ଏ ବନେ ଅନାଥ କରି ଦେଇ ହେଲୁ ଭିନ ଗୋ । ସ । ୪ । ୧୫ ।

ରାଗ ସିନ୍ଧୁଡ଼ା । ଏକତାଳି ।

ଜୀବ ସଙ୍ଗିନ । ମତେ ତୁ ବୁଡ଼ାଇଲୁ ରେ । କୁଳଶୀଳ-ପ୍ରେମ ଛଡ଼ାଇଲୁ ରେ । ପଦ ।

ସେ ମୋହନର ପ୍ରସଙ୍ଗ । ଶୁଣାଇ ମୋହର ଅଙ୍ଗ । ଧନୁ ଧନୁ ଚନ୍ଦ୍ରାରେ ସଢ଼ାଇଲୁରେ । ଜୀ । ୧ ।

ତା ନଟ କୁଟରେ ପଡ଼ି । ଅନୁବରତରେ ଅଡ଼ି । ତାଠାରେ ମୋ ସବୁରାଗ ବଢ଼ାଇଲୁ ରେ । ଜୀ । ୨ ।

ଜାଣୁ ଅବା କି ମନ୍ତ୍ର । ମତେ ତୁ କରି ଯନ୍ତ୍ର । ସେ ପ୍ରୀତିରେ ମୋ ମତି ଜଡ଼ାଇଲୁ ରେ । ଜୀ । ୩ ।

ଦ୍ୱିଜ ରଘୁନାଥ କହି । ତାର କଥା କହି କହି । ନିରନ୍ତରେ ପଛରେ ଗୋଡ଼ାଇଲୁ ରେ । ଜୀ । ୪ । ୧୬ ।

ମାଳିନୀ ବୃତ୍ତ ।

ପହିଲୁ କହିଲୁ ନାହିଁ ଦୂତି ତା ଧୂର୍ତ୍ତବାଣୀ ।
ନିପଟ କପଟ ବୋଲି ଜାଣିଲି ପ୍ରୀତି ହାନୁ ।
ମଦନ କଦନ ଯେତେ ଦେଉଛି ବାଣଘାତେ ।
ସହି ରହିଲି ମୁଁ କୁଞ୍ଜେ ତୋର ଭାଷାକୁ ମାନି । ୧୮ ।

ରାଗ ମାଳବ । ଆଡ଼ତାଳି ।

ଏହିପରି ସେ କଲେ ରଜନୀ । ଏହା ସହିବି କି ମୁଁ ପ୍ରାଣ-ସଜନୀ । କହିଥିଲେ ସେ ଯେତେ । ରହିଲି ନାହିଁ ସତେ । ବହି କାହିଁ ରତି ରସ ମୋହିଲେ ନାହିଁ ମୋତେ । ଏ । ୧ ।

ଦେଖି ମଦନ ଏଣୁ ରତ୍ତକ । ଶର ଯୋଖି ନିରତେ ମୋର ଚିତ୍ତ କ । ଲେଖି ଲେଖି ବାନ୍ଧବ । ରଖିଥିବ ତମନ ଦେବ, ଅଖିଳ ସୁଖକୁ ଉପେଖିବା ମତ ହେବ । ଏ । ୨ ।

ଜଗାଇ ମୋତେ ସଙ୍କେତ ରେ । ଏବେ ଦଗା ଦେଲେ ମାତ୍ର ସେ ଇତରେ । ଆଗାରୁ ଅଣାଇ । ଲଗାଇ ସ୍ନେହ ସତ୍ତ୍ୱ । ଲଗାଲଗି କଥାରେ । ଭଗାର ହସାଇ । ଏ । ୩ ।

କବିଚନ୍ଦ୍ର ରଘୁନାଥ ଏ ବାଣୀ । କହେ ଏ ବିରସ ଗୀତକ ଶୁଣି । ଅବଲମ୍ବରେ ଏବେ । ସେ ବିଜୟ କରିବେ । ନଯାନା ତୋସଙ୍ଗେ । ସେ ବିଶେଷେ ରଖିବେ । ଏ । ୪ । ୧୭ ।

ମାଳିନୀ ବୃତ୍ତ ।

ଅନୁସରି ଧରି ପାଣି ସେ ଗିରୀଧାରୀ ଏବେ ।
ପରିହରି କସ ପାଇଁ ସେ ପରି ଚିତ୍ତ ପ୍ରୀତି ।
ହରିବିଜିତ ସୁମଧ୍ୟା ସେ ହରୀନେତ୍ରୀ ଧନ୍ୟା ।
ହରି ହରି ହରିଲ ଯେ ଶ୍ରୀହରୀ ସଙ୍ଗ ରାଜୀ । ୧୯ ।

ରାଗ ଶ୍ରୀ । ଏକତାଳି ।

ସେ ମୋହନଙ୍କୁ । ସ୍ନେହ କେ ମୋହିଲ ଗୋ । ପଦ ।

ସ୍ନେହେ କେ ମୋହିଲି । ସୁରତ ବହିଲି । ତାର କାମନା ଯେତେ ସଫଳ ହୋଇଲି । ୧ ।

ସରାଗେ କହିଲ, କୁଞ୍ଜରେ ରହିଲ । ତା ତନୁକୁ ଅତନୁ ଶରେ ନ ଦହିଲ । ୨ ।

ଅଙ୍କରେ ବସିଲି । ଅଙ୍ଗରେ ମିଶିଲି । ସଜନୀ ଏ ରଜନୀ । ହରଷରେ ବଞ୍ଚିଲି । ୩ ।

କଣୋଷ୍ଠ ଷ୍ଠପିଲ । ଷ୍ଠବକୁ କହିଲ । କବି-ରଜମାନାଥ ରଘୁନାଥ ଭଣିଲ । ୪ । ୧୮ ।

ରାଗ ଶ୍ରୀ ! ଆଡ଼ତାଳ ।

ସହି କେହ୍ନ ମୋହିଲ ଗୋ । ପଦ ।

କହିଲେ ଯେତେ । ମୋହିଲେ ତେତେ । ରହିଲେ ଲୀଳା କାହିଁ ବହି ସେ କେତେ । ୧ ।

କୋପରେ ଅତି ପରତାପ ହୋଇଛି ସ୍ମର । ଧାପ ଦେଉଛି ଏବେ ମୋ ପରେ ନିରନ୍ତର । ୨ ।

ମନ୍ଦପଣେ ଭୁହାଇ । ମନ୍ଦପାଳ ଡାକଇ, ମନ୍ଦ ପବନ ଅରବିନ୍ଦ-ବନ୍ଧୁ ବହଇ । ୩ ।

ଦ୍ୱିଜ-ରଘୁନାଥ ଭଜଇ ନିରତ । ସେ ଜୁଗଳ-ପଥ । ହେଜ ଜନେ ନିରନ୍ତ । ୪ । ୧୯ ।

ଶିଖରିଣୀ ବୃତ୍ତ ।

ସ୍ପୃହା କାହା ବାହାଯୁଗଳ ପରିରମ୍ଭେ ତ ରହିଲେ ।
ସୁଧାରେ ଶ୍ରଦ୍ଧାରେ ବଦନ-କମଳେ ଚୁମ୍ବ ଦହିଲେ ।
ନଚେନ୍ନୈବେ ଚିତେ ସଚକ ରଖିଲେ କୌତୁକ ବଣେ ।
ମୁଁ ସେ ଚିନ୍ତେ ଧ୍ୟାନେ ଭ୍ରମି କି ରହିଲେ କାନ୍ତ ଗହନେ ।୨୦।

ରାଗ ଆଶାବାରୀ । ଏକତାଳି ।

ଆସିଲେ ନାହିଁ କାହିଁ ପାଇଁ ଶ୍ୟାମ । ପଦ ।

ଆସିବି ବୋଲି କହି । ଆଣି କୁଞ୍ଜେ ଜଗାଇ । ତୋଷିଲେ କାହା ମନ ସେହି । ୧ ।

ସଖୀଏ କଉତୁକେ ସଙ୍ଗ ହୋଇ ଉତ୍ସୁକେ । ରଖାଇଲେ କ ଅଟକାଇ । ୨ ।

ଅନ୍ଧକାର ବନରେ । ଆସନ୍ତେ ସଙ୍କେତରେ । ବନ୍ଧ ହେଲେ କ କେଉଁଠାଇଁ । ୩ ।

କହଇ ରଘୁନାଥ । କବି-ରଜମାନ:ଥ । ଶ୍ରୀହରି ପାଦପଦ ଧ୍ୟାଇ । ୪ । ୨୦ ।

ରାଗ ନାଟକୁରଙ୍ଗ । ଆଡ଼ତାଳ ।

ଗୃହିଁ ସଜନ କ ହେଲ ଗୋ । ପଦ ।

ଯାହାର ଭୁଲେ । ବେହାର କଲେ । ତାହାକୁ ସେ । ବାହା ବଶେ । ସାହା ହେଲେ । ୧ ।

ପାଣି ଧଇଲେ । ବାଣୀ କହିଲେ । ଆଣି ମିତ ପୁଣି । ସେ ତ ଆଣି ନେଲେ । ୨ ।

ଅତି ତୋଷରେ ରତି-ରସରେ । ସ୍ୱତ ହରି ମାତ ହରି ପ୍ରୀତି କଲେ । ୩ ।

ମାର ନରତେ । ମାରଇ ମୋତେ । ସେ ରସିକବର ଦେଖ ଦୂର ହେଲେ । ୪ ।

ନାଥ ନଇଲେ ସାର୍ଥ ନ କଲେ । ପଥ ଜଗୁ ବ୍ୟର୍ଥ ରଘୁନାଥ ବୋଲେ । ୫ ।

ଶାର୍ଦ୍ଦୂଲବିକ୍ରୀଡ଼ିତ ବୃତ୍ତ ।

ମାଲା ଚନ୍ଦନ ନାଗବଲ୍ଲି ତତି ମୁ କର୍ପୂର ସଙ୍ଗେ ରଖି ।
ଜାଣି ସେବଣି ପାଖୁଡ଼ା ତଳପରେ ହୃଷ୍ଟେ ତ ସିଞ୍ଚଇଲି ।
ପଞ୍ଚେ ପୁଷ୍ପବିତାନ ବାନ୍ଧି ସଦନେ ଜାଳି ପ୍ରଦୀପାବଳି ।
କାନ୍ତ କାନନ ଚନ୍ଦ୍ରିକାବତି କଲେ ବ୍ୟର୍ଥେ ତ ଜାଗ୍ରତ୍ତୀ ।୨୧।

ରାଗ ମାରୁଆ । ଆଡ଼ତାଳ ।

ଆଜ ବରଜ ଯୁବରାଜ କି କଲେ ମତେ । ମୋ ଜୀବ ସଖୀ ଯୁହାଁରେ । ଯାଜର ହେବ ବୋଲି । ଓଜରେ ଜଗିଥିଲି । ତେଜଦ୍ବାନ ହୋଇ । ଲଜରେ ମୁଁ ପଡ଼ିଲି । ୧ ।

ସାଜିଥିଲି ଶେଯ । ରଜୀବମୁଖ ମନ ରଞ୍ଜକ ସୁସ୍ନେହରେ ଗୋ । ନେତ୍ରକବାଟ୍ଠୁ ସେ ମତେ । ଦେଇ କାମ କରରେ, ଯୁଜ ରାଜ ବଶିଖ ବନ୍ଦ ମାରେ ଦେହରେ । ୨ ।

ରସରସିକ ମୃଦୁଭାଷକୁ ଶୁଣି ପ୍ରଭୁ ଆଶ ମୋ ବଳିଥିଲା ଗୋ । ତୋଷରେ ମୁଁ ନିକୁଞ୍ଜବାସରେ ବସିଥିଲି । ବାସ ସୁମନଭୂଷା ବେଶ ବିଫଳ ହେଲା । ୩ ।

ଜାଳି ଆଜ ପ୍ରଦୀପ ବନମାଳ କଳାପ ଗୁନ୍ଥିଥିଲି ନେତରେ ଗୋ । ଆଳି ଗୁଞ୍ଜାକୁସୁମ .ଆଳି ମୁଁ ରଖିଥିଲି । ଜାଳିଦେଇ ସଖି କାମକୁ କାଳି ଦେଲେ ପ୍ରୀତିରେ । ୪ ।

ରସରଙ୍ଗିଣୀ ନବୀନ ଭାଷ ଏପରି ଭାଷନ୍ତି ସଖୀଙ୍କ ଗହନେଁ । ଭାଷଇ ରଘୁନାଥ ରୋଷ ନ କରି ଚିତ୍ତ କେଶବଙ୍କୁ ଆଣିବା ପାଶକୁ ଦୁଃଖ କହ । ଆ । ୫ ॥ ୨୧ ॥

ମନ୍ଦାକ୍ରାନ୍ତା ବୃତ୍ତ ।

ତାରେ ବାରେ କହୁ କହୁ ମତେ କୁଞ୍ଜବାସେ ଥିବାରେ ।
ପାରେ ଗାରେ ଗଣିଥିଲି ସତେ ସ୍ନେହ ମଧ୍ୟେ ରସାରେ ।
କ୍ଷୀରେ କ୍ଷାର ପ୍ରଣୟୁ କଲି ଗୋ ବାଣୀ ତା ପାଣିଗାରେ ।
ଯାରେ ରେ ଦୂତି ପରତେ ନ କରେ ଭାଡ଼ିଲେ ସେ ହଜାରେ ॥ ୨୨ ॥

ରାଗ-ତୋଡ଼ି । ଆଡ଼ତାଳି ।

ସହି ଗୋ ଆଜ ଏଣିକି । କହିଲେ କେତେ ପରତେ । ନାହିଁ ସେ ବେଣୁପାଣିଙ୍କି । ପଦ ।

ଶୟନ ଲଭେ ନ ସହି । ଥୟରେ ଦଣ୍ଡେ ନ ରହି, ଅୟନକୁ ଚାହିଁ ଚାହିଁ । ନୟନୁଁ ତେଜ ପାଣିକି । ୧ ।

ସଞ୍ଜବେଳୁ ବେଶ ସାଜି । କୁଞ୍ଜରେ ଥିଲି ମୁଁ ଆଜି । କଞ୍ଜ-ନେତ୍ର ତେଜ ରଜ । ଭଞ୍ଜନ କଲେ ଆଣିକି । ୨ ।

ଭରମେ ପଡ଼ିଲି ଯାହା । କରମେ ଥିଲା କି ଏହା । ମରମେ ନାହିଁ ଉତ୍ସାହା । ନରମେ ମନ କେଣିକି । ୩ ।

କବିଚନ୍ଦ୍ର ବୈଦ୍ୟନାଥ । ଭଣି କହେ ତୋର ଚିତ୍ତ । ଥିବାର କର ଗୋ ସତ । ଯିବି ମୁଁ ଆଣି ତେଣିକି । ୪ । ୧୨ ।

ମାଳିନୀ ବୃତ୍ତ ।

କୁମୁଦ କୁମୁଦନୀଏ କାନ୍ତରେ ନେତ୍ର ମୋଦେ ।
ସୁମନ ସୁଜନ ଲଭେ ସାନ୍ଦ୍ର ଧ୍ୱାନ୍ତ ନାଶେ ।
କମଳ କୁଳ ଜନଦ୍ରେ କାମଦର୍ପ-ପ୍ରଗାଢ଼େ ।
ସୁମନ-ବଧୂ-ବିଗନ୍ଧେ ଚନ୍ଦ୍ରବିମ୍ବ ଆସି । ୧୩ ।

ରଥୋଦ୍ଧତା ବୃତ୍ତ ।

ଅମ୍ବରେ ଧରୁଛି ଚନ୍ଦ୍ରଖଣ୍ଡକ ।
ଶମ୍ବରାରି ଶର ପୀଡ଼ିତାଧିକେ ।
ଅମ୍ବୁ-ଜାତ ନୟନା ମନେ ମହା—
ଦମ୍ଭରେ କଥିଛି ଆଳି ସମ୍ମୁଖେ ।

ରାଗ-ଆହାରି । ଅଠତାଳ ।

କାହିଁକି ଏ କୁଞ୍ଜ ବନକୁ ଆସିଲି । ସଙ୍ଗିନି ରେ । ସହଳି ଏ ଦୁଃଖ ଚିନ୍ତାରେ ଭସିଲି । ୧ ।

ସୁଧାକର ଆସି ଉଦୟ ହୋଇଲା । ଉଦ୍ଧାର ହୋଇବା ପଥ ନ ଦିଶିଲା । ୨ ।

ସେ ଯେବୁ ସଙ୍କେତ ଦେଇ ନ ଆସିଲେ । ମୋ ଯଉବନକୁ ଅକାରଣ କଲେ । ୩ ।

ସଦନରେ ସୁଖେ କାଳ ବଞ୍ଚୁଥିଲି । ମଦନ କରରେ ଏବେ ମୁଁ ପଡ଼ିଲି । ୪ ।

କବିସୁଧାନିଧି ରଘୁନାଥ ବୋଲେ । ଏ ବିଚ୍ଛେଦ ଯିବ ମୋହନ ଆସିଲେ । ସ । ୫ । ୨୩

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ବନ୍ୟାଗ୍ରେର ପରି ନିକୁଞ୍ଜ ସଦନେ ବାଞ୍ଛାନ୍ତରେକେ ରହି ।
ଧନ୍ୟା ହେବ ମଣି ମୁଁ କୃଷ୍ଣସହିତେ ତୋଷେ ତ ପ୍ରେମା ବହି ।
ପୁଣ୍ୟାତ୍ୟନ୍ତ ପୁରି ମୁଁ ଯେ ନ ବହିଲି ପ୍ରାପ୍ୟେ ପ୍ରୟାଗାଦରେ ।
ଶୂନ୍ୟାଗାରପ୍ରଦୀପପ୍ରାପ୍ତ ସବୁ ତା ସଙ୍ଗେ କଲି କାମନା । ୨୪ ।

ରାଗ-ହୁସେନି । ଆଡ଼ତାଳି ।

ଶ୍ୟାମ ଲାଗି ମୁଁ ହେଲି ଦୁଃଖ ଭାଗୀରେ । କାମନା କରି ଏକା କୁଞ୍ଜରେ ଜଗି । ପଦ ।

• ଝାମ ଲଭିଲି ଏବେ ଯାମ ଯାମକୁ । ବାମଦେବର ପରଶରେ । ମୋ ମନେ ହେଜ-ଥିଲି ପ୍ରେମରେ ମଜ୍ଜି । ମୋହନଙ୍କୁ ମୋହିବି ବୋଲି, ରତି ରସରେ । ୧ ।

ଭାଷିଥିଲେ ସେ ମୋତେ ଆସିବି ବୋଲି । ନାଶିଲେ କପଟେ ଭୂଲାଇ । ଦୋଷୀ ମୁଁ, ନୁହଇ କିଶୋରଠାରେ ସହି । ବସି ବସି ନିଶି ଆସି ଗଲାନି ପାହି । ୨ ।

ସାରି କରି ମୁଁ ମାନ ତାର ବଚନକୁ ସ୍ଥିର କଲି ଧରମ ଯେତେ। ପାଂର ମୁଁ ଦେବି କେନ୍ତି । ମାର ମୁଖରୁ ସହି । କା ଉପଷ୍ଟେ ରସି ସେ ଦୂର କଲେ ଯେ ମୋତେ । ୩ ।

ରାସ-ରଙ୍ଗିଣୀ ନିରାସ-ଭାଷ ଶୁଣି ଭାଷଇ ଦ୍ୱିଜରଘୁନାଥ । ଆସିବେ ତୋ ସେ ବଂଶୀପାଣି ଏହିକ୍ଷଣି । ରସେ ମାତ୍ର ସାର୍ଥ କର ତୋ ମନୋରଥ । ୪ । ୨୫ ।

ସ୍ରଗ୍‌ଧରା ବୃତ୍ତ ।

କେ ବା ରେବାନ୍ଦ ତୀର୍ଥେ ତପ କରି ଜପରେ ତୋଷିବାରେ ଶିବାରେ ।
ଯେବା ତା କାମ ପୂର୍ଣ୍ଣେ ରଖିଅଛି ସହି ଗୋ ଭାବ ହାବାଦିରଙ୍ଗେ ।
ସଂକଳ୍ପ କଳ୍ପନାକୁ ଦୂରନ୍ତର ମଣି ସେ ଧୃଷ୍ଟ ସଂଜଳ୍ପନାକୁ ।
କଲ୍ପ ପ୍ରାପ୍ତ କ୍ଷଣାର୍ଦ୍ଧେ ବିରହରୁ ନ ସରେ ତଳ୍ପରେ ନାଳ୍ପଦୁଃଖେ ।୨୬

ରାଗ ବରାଡ଼ି । ଅଡ଼ତାଳି ।

କି କରିବି କହ ଗୋ । ସଜନି ଏବେ । ପଦ ।

କି କରିବି କହ ଏବେ । ନ କଲେ କରୁଣା ଯେବେ । ଅଟକେ ରହିଲେ କି ଗୋ । ସେ କେଉଁ ରମଣୀଭାବେ । ୧ ।

ସକଳ ବିଷୟୁ ତେଜି । ଅକପଟେ ଥିଲି ଭଜି । ମୁଁ କରି ନାହିଁ ତ ଦୋଷ ନିକର କହୁଚି ଆଜି । ୨ ।

କଲପ ସୁକୃତ । ପଦତଳରେ ରହିବ ଆସି । କଳପିଲେ ପଦେ ସେହି । ତଳପ ଉପରେ ବସି । ୩ ।

ମଦନଶରରେ କେତେ । କଦନ ମତେ ସେ ଦେଲେ । ସଦନେ କାହାର ରହି । ବଦନ ନ ଦେଖାଇଲେ । ୪ ।

କହି ସୁଧାନିଧି ଭଙ୍ଗୀ । ଏ ବିରସ ବାଣୀ ଶୁଣି । ଅବିଳମ୍ବେ ଦୂତୀ ବୋଲେ । ଯିବି ମୁଁ ତାହାଙ୍କୁ ଆଣି । ୫ । ୨୭ ।

ଗଦ୍ୟ

ପଞ୍ଚାନନ ଚରପଞ୍ଚାନନ ପରତାପ-ସଞ୍ଚାରଣେ ପାଂଶୁଗାଞ୍ଚ ପାଞ୍ଚ ମାରିବାରେ । ବଞ୍ଚକ ବଞ୍ଚକରେ । ବଞ୍ଚାଇବାକୁ ନ ଥିବାରେ । ସଞ୍ଚିତ ପ୍ରୀତି ବିଚ୍ଛେଦରେ । କୁଞ୍ଚିତ କେଶୀ ବିପଞ୍ଚ । ଘଟିମା କଞ୍ଚିତ ଥିର ନୋହି । ଘଞ୍ଚାଳନ ସହି ନିଶ୍ୱାସ ମୁଞ୍ଚି ମୁଞ୍ଚି । ଜଗଦାନନ୍ଦ-କୁନ୍ଦେନ୍ଦୁକିରଣତାପରୁ । ମନ୍ଦ-ଗନ୍ଧ-ଶୀତ-ମରୁତ ଚନ୍ଦନ ବଣୁ ବହିବାରୁ । କୁନ୍ଦ ମନ୍ଦାର ବନ୍ଧୁକାରବିନ୍ଦ ମକରନ୍ଦ ସନ୍ଦୋହ ପାନୁ ମିଳିନ୍ଦ-ବୃନ୍ଦ ବୃନ୍ଦ ମନ୍ଦ-ମନ୍ଦ-ସଙ୍ଗୀତ ଗାନରୁ । ମନ୍ଦ-ପାଳିତ ମନ୍ଦ୍ରହ୍ରତରୁ ଚନ୍ଦ୍ରାକାନ୍ତରୁ । ସ୍ୱାନ୍ତ ।ଥିରୁ । ମଦନ ଭ୍ରମକର ମଧୁକର ପିକ-ନିକର ପବନେ । ଶ୍ରୀମତୀ କଥିତ ବାଣୀ ଦୁଃଖିତ ମନେ । ୮ ।

ମାଳିନୀ ବୃତ୍ତ ।

ଅତନୁ ତନୁ ନ ଥାଇ ଯାନକୁ କ୍ଷୀଣ କହୁ ।
ତନୁ ଥିଲେ ନ ରଖନ୍ତୁ ଯାନମାନଙ୍କୁ ଲୋକେ ।
ହରନୟନ ସକାଶୁଂ ଶେଷ ଯା ନୋହିଲୁ ତୁ ।
ବିରହିଣୀରେ କପାଇଁ ନୋହିଲୁ ଦୁଃଖ ଦାତା । ୨୭ ।

(ପୁଣି)—ମଦନ କୁସୁମକାଣ୍ଡେ ମାର ନା ଥାଅ ଦଣ୍ଡେ ।

ସଦୟ ମତ ହରଙ୍କ ପାଦରେ ମାନ ଶନ୍ତ ।
ବଦନ କମଳ ମଧ୍ୟେ ମୋଦରେ ଚୁମ୍ବ ଦେବ ।
କଦନ ଦେଇ ତ ପଶ୍ଚାଦ୍ଘାତରେ ବାଣ ବନ୍ଧ । ୨୮ ।

ପୃଥ୍ୱୀ ବୃତ୍ତଂ ।

ମନୋଜ ମନୁସମ୍ଭବା ମନକୁ ମନ୍ଥିବା କୋପରେ ।
ସଦାଶିବ ସଦାଶିବପ୍ରକର ବାଞ୍ଛିଲେ ନେତ୍ରରେ ।
ତଥାପି ତନୁ ହୀନରେ ରତ୍ନ ତୁ ଭୂତଭାବେ ସତତ ।
ଅନଙ୍ଗ ବିଷମାଶୁଗେ ପୁଣି ତ୍ୱ ଭେଦୁ ମୋ ମର୍ମକୁ ।

ରାଗ ଶ୍ରୀ । ଏକତାଳି ।

କଦନ ଦେଇ ତୁ କେତେ ରେ ମଦନ ମୋତେ । ପଦ ।

ସଦନ ହେଲନି ବନ । ବଦନ ଦେଖିର୍ ମ୍ଳାନ । ରଦନ ଛଡ଼ନ୍ତୁ ବାଣ । ଛେଦନ କରୁ ନାରନ୍ତେ । ୧ ।

ବିଷମ-ବିଶିଖ ବାର । ବିଷମ ବିଶିଖବାର ।
ଅସମୟରେ ମୋହର । ଚାପ ନ ଧର ତୁ ଶତ୍ରେ । ୨ ।

ତୋହର ଅଟଇ ପର । ଯେ ହର ତାକୁ ପ୍ରହାର । ମୋହର ଠାରେ ସତ୍ୱର । ଫହର କୋପ କାହିଁତେ । ୩ ।

ନକର କହୁଚି ବାଣୀ । ନକର ମୋହର ଶୁଣି । ମକରଧ୍ୱଜ ତୁ ପୁଣି । ନ କର କ୍ରୋଧ ମନ୍ତ୍ରେ । ୪ ।

ସବ୍ବକଲେ ଏହ୍ବ ପର । ସନ୍ତାପ କହୁଁ କେଶୋଶ୍ୱ । କବିସୁଧାନିଧି ଭଣି । କର ସ୍ମରଣ ନରତେ । ୫ । ୬୭ ।

## ଚନ୍ଦ୍ରନନ୍ଦା । ପୃଥ୍ୱୀ ବୃତ୍ତ ।

ହିମାଂଶୁ ତୁ ହିମାଂଶୁରେ ଦହ ରମାର ଯେ ବାସକୁ ।
ଅମାର୍ଗ ଗୁରୁଶାପରେ ନ ରହିଲ ସମାନେ ବପୁ ।
ଜମା ନୋହୁ ତୁ ସେ ବଶେ ସତ ସୁମାର୍ଗ ଦେବାଦରେ ।
କ୍ଷମା ବିହର ଯା ତଟେ ଗଜତମୋତ୍ତମା ଜାରତୁ । ୩୦ ।

## ମନ୍ଦାକ୍ରାନ୍ତା ବୃତ୍ତ ।

ଦୋଷା ଯୋଷାବର ବିହବସା ନାଶିବାରେ ତୁସାରେ
ରୋଷାବେଶେ ବିହିତ ବି ସତେ ବିଧଏ ସେ ମଧାରେ ।
ଆଶା ହାସାବଶୁ ଶଶୀ ଶଶା ନାଶ ହେଲା ତୃଷାରେ ।
କ୍ଲେଶାତ୍ୟନ୍ତେ ବିହ ନୁହ ମନେ ତୁ କଳଙ୍କୀ ରସାରେ ।୩୧।

## ସ୍ରଗ୍ଧରା ବୃତ୍ତ ।

ଆର୍ଯ୍ୟା ମର୍ଯ୍ୟାଦଭଙ୍ଗେ ବିଟପିକୁଳ-ଗଡ଼ା ଗୂଢ଼ମାର୍ଗ ପ୍ରକାଶେ ।
ତୋଷା ଯୋଷାଙ୍ଗସଙ୍ଗେ କମଳଜ କମଳା-ବାସ ନାଶପ୍ରଭାବେ ।
ଚନ୍ଦ କ୍ରୀଡ଼ା ବିଭନ୍ନେ ବିରହିଣୀ ବିମୁଦେ ଏଣଙ୍ଗୀବା ପଦାରେ ।
ଏତେ ଦୋଷେ ପ୍ରକାଶେ କୁମୁଦିନ ରସିକାକାନ୍ତ ଲାଞ୍ଛନାଙ୍ଗେ ।୩୨।

## ରାଗ ଆହାରି । ଆଡ଼ତାଳି ।

ବିଧୁ ରେ । ବଡ଼ ବାଧୁରେ । ବିରହିଣୀ ରେ । ପଦ ।
ମଧୁର ହାସକୁ ମୋହନର ଧାଇ । ଅଧୁନା ପାଇଛ ।
ଅନୁତାପ ମୁହିଁ । ୧ ।

ଆଶା ହରଣର । ହରି ତୁ କଳଙ୍କୀ । ନାଶିଲେ ତୁ ମତେ ।
ଦୋଷୀ ନୋହିବୁ କି । ୨ ।

ଶୀତକର ତୋର । ଫସାରେ ପ୍ରଖର । ହିତକର ନୋହି । ହେଲୁ ବାଧାକର । ୩ ।

ବଡ଼ବାନଳ ର । ଭ୍ରାତ ତୁ ନକର । ପୀଡ଼ିବୁ ନାହିଁ କ ବିଷଧର ଧର । ୪ ।

କବି ନିଶାନାଥ । କହେ ଶାନ୍ତିତ, ଅବିରତ ଖିଦ୍ଧ । ହରିଙ୍କ ଚରିତ । ୫ । ୨୮ ।

ରାଗ—ବେଳାବୋର, ଏକତାଳି

ସୁଧାକର ତୁ ନିରତେ । ବାଧା ଦେଉଅଛୁ କେତେ । ସାଧାରଣ ମାର୍ଗେ ରହି । ଉଦ୍ଧାର କର ସନ୍ତତେ । ୧ ।

ଉଦୟୁ ନହେଲେ ତୋହର । ମୋଦ ହୁଅଇ ଲୋକର । ହୃଦୟୁ ଭିତରେ ମୋର । କଦନ ଦେଉ ମାତର । ୨ ।

କାମ ସଖା ତୁ ହେବାରେ । ବାମ ହେଉ ବାରେ ବାରେ । ହିମ-ଗୁଣ ଛାଡ଼ି ଏବେ । ଧାମ ଦେଉ ନିରନ୍ତରେ । ୩ ।

କବି ସୁଧାନିଧି ଭଣି । କୃଷ୍ଣପାଦ-ଯୁଗ ଗୁଣି । ଅବଲମ୍ବେ ରାଧା ପାଣି । ଆର୍ତ୍ତେ ଭୃଙ୍ଗେ କହି ବାଣୀ । ୪ । ୨୯ ।

ଭ୍ରମର ନିନ୍ଦା । ମନ୍ଦାକ୍ରାନ୍ତା ବୃତ୍ତ ।

ମଧୁକର ରହ ଦୂରରେ ଦୂରରେ ।
ରବ ନ କର ତୁ ପାଶରେ ପାଶରେ ।
ସୁମନ ସରସ ପାନରେ ମତ୍ତରେ ।
ଅବିରତ ବସ କାନନେ ମୋଦରେ । ୩ ।

ବସନ୍ତତିଳକା ବୃତ୍ତ ।

କୁନ୍ଦାର ବନ୍ଦ କରଣୀର ସୁବନ୍ଧୁକାନ୍ଧ ।
ମନ୍ଦାର ଜାତି ନବ-ମାଳିକ ଯୂଥ ମଲ୍ଲୀ ।

ମାକନ୍ଦ-ବୃନ୍ଦ-ମକରନ୍ଦ ମିଳନ୍ଦ ତେଜ ।
ସନ୍ଦେହିଂ ନୋହି କୁଞ୍ଜେ ମିଳୁ ମନ୍ଦମନ୍ଦେ । ୩୪ ।

ମାଳମୀ ବୃତ୍ତ ।

କୁସୁମ ସମସ୍ତ ସ୍ୱାଗେ ଫେରି ତୁ ବେଗବେଗେ ।
କୁସୁମ ସମସ୍ତ ଜାଣି ଚୁମ୍ବି ଦେଉ ସରାଗେ ।
ମୁଣି ତୁ ମଧୁପ ନାମେ ଖ୍ୟାତ ହୋଇଚୁ ଲୋକେ ।
ବଳ ନ ବହିବୁ କାହିଁ ଦୁଃଖ ବାହୁଲ୍ୟ ମତ୍ତେ । ୩୫ ।

ରାଗ କାମୋଦି, ତାଳ ଆଦି ।

ଅଳି ପରମ ସୁଖରେ । ନଳିନ କର୍ଣ୍ଣିକାସାରେ । ମିଳି ମନ ଆନନ୍ଦରେ । କେଳି କର ଅଭ୍ୟନ୍ତରେ । ୧ ।

କେତେ କରୁଚୁ ଝଙ୍କାର । ମତେ କରି ଅହଙ୍କାର । ଏତେ ସରି ହେଲେ ତୋର । ଚତ୍ତେ କାହିଁ ନୋହେ ଥିର । ୨ ।

ମାନବତୀଙ୍କର ଚିତ୍ତ । ଗାନରେ କରୁ ବ୍ୟଥିତ । ଅନବରତ-ରେ ଧୂର୍ତ୍ତି । ତୁ ନ କର ସନ୍ତାପିତ । ୩ ।

କହେ କବିନଶାନାଥ, ଗୁଣ ଶ୍ରୀକୃଷ୍ଣ ଚରିତ । ରହେ ଶ୍ରୀକେଶୋଶ୍ୱ ପୁଣି । ସ୍ନେହେ କହେ ଏ ଭାଷିତ । ୪ । ୩୦ ।

କୋକିଳ ନିନ୍ଦା । ରଥୋଦ୍ଧତା ବୃତ୍ତ ।

କାନନ ପ୍ରିୟ ତୁ କାନନେ ରହି ।
ଗାନରେ ଦ୍ରବ କରାଇ ରସାଳକୁ ।
ପାନରେ ରସ ତୁ ଚିତ୍ତ ତୋଷରେ ।
ମାନଦେ ନକରୁ ତୋ ରବ ବ୍ୟଥା । ୩୬ ।

କାନନ ପ୍ରିୟ ନାମ ତୋ ସଦା । କାନନେ ପ୍ରିୟ ଭାଷ କୁହାଇବୁ ।
କାକରକ୍ଷ ପିକ ତୁଚ୍ଛ ନାମରୁ । କା କରେ ନ ପଡ଼ୁ ମାତ ଭାବରୁ ।୩୭।

ରାଗ ପୁନ୍ନାଗ, ଏକତାଳି ।

ମନ୍ଦ ଗାଳ । ପିକ ମନ୍ଦ କାଳ । ଆରେ ଆରେ । ପଦ ।

କଳକଣ୍ଠ ନାମ ତୋର । କଳପିତ ବେଦବର । କାଳକଣ୍ଠ ହେବା ବଶୁଁ । କାଳ ତୁ ହରହୃଣୀ ର । ୧ ।

ପରଭୃତ ନାମ ବହୁ । ପରକୁ ସନ୍ତାପ ଦହୁ ପରମ ବିବେକ ଜନେ । ପରଶଂସା ହେବୁ କାହୁଁ । ୨ ।

ଶର ପ୍ରୀତିକି ହଜାଇ । ପରରେ ମାଡ଼ୁଚ ଯେ ତୁହି । ତାର ମନ ମୋହିବାକୁ । ତୁ ରବ କର ସେଠାଇ । ୩ ।

କବି ସୁଧାନିଧି ଭଣି । କଣୋଶ୍ୱ ବଚନ ଗୁଣି । ସବୁକାଳ ମନ ହୋଇ । ଶ୍ରୀମନ୍ତ କହନ୍ତି ପୁଣି । ୪ । ୩୧ ।

ପବନ ନନ୍ଦା, ପୃଥ୍ୱୀ ବୃତ୍ତ ।

ସଦାଗତି ସଦା ଗତି ନ କର ଯାଅରେ ଦୂରରେ ।
ତୁ ମନ୍ଦପଣ ଛାଡ଼ରେ ନ ବହ ମନ୍ଦ ମନ୍ଦେ ସତେ ।
ଜଗଜ୍ଜନ ପରାଣ ତୁ ନ କର ପ୍ରାଣପୀଡ଼ା ମତେ ।
ଦୁରନ୍ତେ କମ୍ପ ନୋହିବୁ ବଳିବୁ ଯା ଭୁଜଙ୍ଗାଶନୁ । ୩୯ ।

ରଥୋଦ୍ଧତା ବୃତ୍ତ ।

ମନ୍ଦ ଶୈତ୍ୟ ଗୁଣ ବ୍ରାତ ତୋ ଥିଲ ।
ମନ୍ଦ ସଙ୍ଗ ବଶୁ ବାତ ତା ଗଲ ।
ଗନ୍ଧସାର ନଗ-ସର୍ପ ଭୁଞ୍ଜରୁ ।
ଗଣ୍ଡରେ ବଳି ତୁ ତାପ ସଞ୍ଚରୁ । ୪୦ ।

ଶିଖରିଣୀ ବୃତ୍ତ ।

ଜଗତ୍‌ପ୍ରାଣ ପ୍ରେତ ପ୍ରଭୃତିକୁ ବହୁ ମନ୍ଦଗୁଣରେ ।
ନ ଦେଇ ସନ୍ତାପ କ୍ଷଣକ ସିବୁକ ମୋ ନିକଟରୁ ।
ନବାମ୍ଭୋଦଶ୍ୟାମ ପ୍ରଭୁକସଦ ମୋ ସଙ୍ଗମ ବିହି ।
ଚନ୍ଦ୍ର ସ୍ପନ୍ଦ ପଙ୍କେ ବିକଳ କରରେ ତୋ ନିଜ ଗୁଣେ । ୪୧ ।

ରାଗ ଆହାରି । ଆଡ଼ତାଳ ।

ସମୀରଣ ଶୁଣ ବାରେ ରେ । ଏବେ ବାମ ନୃପ ମୋ ଠାରେ ରେ । ପଦ ।

ଦୈତ୍ୟନାମ ଯେବେ । ସତ୍ୟ ବହୁ ତେବେ । ଦିତ୍ୟାରି କ ବାମକର ମନଭାବେ । ୧ ।

ଜଗତପ୍ରାଣ ତୁ ଜଗତେ ପ୍ରମାଣ । ଅଗତି ନ କର ଦୁଃଖିନୀ କି ପୁଣ ।୨।

ଅବଳାରେ କପଁା ତୁ ବଳୀ ନୋହିବୁ । କବକୁ ବଳରୁ ଭୁଜଙ୍ଗରି ଠାବୁ । ୩ ।

କହେ ରଘୁନାଥ କବି ନିଶାନାଥ । ରହେ ଶ୍ରୀ କିଶୋରୀ କହିବା ଭରତ । ୪ ।

ସଖୀଙ୍କ ପ୍ରତି ଶ୍ରୀରାଧା । ମାଳସୀ ।

ରଜନୀ ଚରମଭାଗେ ଆସିଲେ ନାହିଁ ଯେବେ ।
ସଜନି ତୁ କସ ବାଟେ ଚିତ୍ତରେ ଚିନ୍ତ ବାରେ ।
ରଜନୀକର ସ୍ମରହେ ମୋହିଲ ତାଙ୍କୁ ଯେବେ ।
ସଜବନଜ ସୁନେତ୍ରୀ ଧନ୍ୟ ତା ପ୍ରୀତି ରୀତି । ୪୨ ।

ରାଗ ରେଖୁପ୍ତ । ଆଦ୍ୱତାଳ ।

ଏ ନିଶି । କି କଲେ କାନ୍ତ ନ ଆସି ବିଷମଦଶାରେ । ଲୋକ ହସାରେ । ବସିଲି ବସାରେ ସଜ଼ଗଲି ମୁଁ ଆସି । କହିଲେ ସେ ଯେତେ । ଯେନ ତାହା ଚିତ୍ତେ । କରିଥିଲି ସତ ପ୍ରତେ ଗୋ । ଏବେ ତାଙ୍କ ଚିତ୍ତେ । ନ ରହିଲି ସତ କପାଁ କଲେ ଏତେ । ସରି ଗୋ ପ୍ରାଣମିତେ । ୧ ।

ଆସିବେ ଅବଶ୍ୟ ବୋଲି ପ୍ରାଣଈଶ । ଗୃହୁଁ ଥିଲି ଦଶଦଶ ଗୋ । ସେ ମୋହର ଦୋଷ । ନ ଦେଖି ନିରାଶ । କଲେ ତ ସେ ରାସରସିକ ଏହା କସ ! ୨ ।

ସେ ଯେଉଁ ଅନାଥା କରିଦେଲେ ନାଥ । ଗୃହସ୍ଥ ପୁରୁଷାର୍ଥ ବ୍ୟର୍ଥ ଗୋ । ଆଜ ମନୋରଥା ନୋହିବ କ ସାର୍ଥକ ହେ ରଘୁନାଥ । ଆସିନବେ ଏବେ ନାଥ । ୩ ।

ରେଗୁପ୍ତ । ଆଡ଼ତାଳ ।

ସନ୍ଧି କେକ, ମୋହିଲକ, ପ୍ରାଣନାଥଙ୍କୁ । ପଦ ।

ମୋହିଲକ, କହିଲକ, ଚୁମ୍ବିଲେକ, କାହିଁକ କ, ବହି ସେକ । ୧ ।

କାମନାରେ କା ମନାରେ, ବାମ ହେଲେ ଶ୍ୟାମ ଭଲେ, ପ୍ରେମ କଲେ । ୨ ।

ଅ.ନ ଦେଲେ, ଆନ କଲେ, ଭିନ୍ନ ହେଲେ, ସେ ନଇଲେ, ଦିନ ନେଲେ । ୩ ।

ରାଧାକୃଷ୍ଣ, ରାଧାକୃଷ୍ଣ ଧ୍ୟାନରେ ସୁଧା ନରେ, ବାଧାହରେ । ୪ ।

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ନଷ୍ଟେ ଆସିବବୋଲି ଭାଷି କପଟେ କୁଞ୍ଜେ ଜଗାଇ ମୋତେ ।
କାହା ସ୍ନେହ ବଶେ ଅଶେଷ ଚପଳେ ସେ ମଜ୍ଜିଲେ ତୋଷରେ ।
ରହିଁ । ଶ୍ୟାମ ସୁଧାନିଧି ପ୍ରିୟବଶେ ଯା ନୋହିଲେ ମୋ ରସେ ।
ବ୍ୟର୍ଥେ କାନନ ମାଳତୀ ପରି ସତେ ଏ ଶର୍ବରୀ ଯାଉଛି । ୪୩ ।

ରାଗ ମୁଖାବରି । ଆଡ଼ତାଳି ।

ଏଣିକି ମୁଁ ଜାଣିଲି । ତାର ବିବେକ ଏତିକି ବୋଲି ରହିଲି । ଆଜି ନିକୁଞ୍ଜକୁ ଆସିବ ବୋଲି ସେ । ଏଣିକି ନ ଆସି ରହିଲେ କା ରସେ । ପଦ ।

ସତ ବୋଲି ହେଜି ତା ଭାଷା । ସହି ରହିଲି ଏ ଦୁଃଖକୁ ନାଶା । ବୃଥା ଚେଷ୍ଟା କଲେ ଏ ଲୋକ ହସା । ହେଲି ଏତେପର କରି ମୁଁ ଆଶା । ୧ ।

ମଧୁ ନଶି ଆସି ପାଇଚ । ବଧୂ-କରଣ ଅଧିକେ ବାଢ଼ିଚ ।
ମଧୁକର-ରବ ଧୃତ ନେଉଚ । ମାନ ତା ଭଷାକୁ ଯାହା ହେଉଚ ।୨।
କବ ସୁଧାନଧି ଏ ବାଣୀ । କହଇ ଶୁଣ ଗୋ ସୁବାଣୀ ।
ନ ବଚ୍ଛର ନଭେ ମୁରଲୀ-ପାଣି । ନାଗର ଆସିବେ ସମସ୍ତ ଜାଣି ।୩।

ବଂଶସ୍ଥ ବୃତ୍ତ ।

ନଶାବସାନେ ତ ପ୍ରିୟଂବଲ୍ଲେକନେ ।
ମୁରାର ନୋଶୁଗ ବାଣ ଭେଦନେ ।
କୁଞ୍ଜାଳୟ ପ୍ରାଙ୍ଗଣ ହେଉ ସଭୁରେ ।
ସକୌତୁକେ ଭାଷିତ ଭାଷି ରାଧିକା ।

ରାଗ ବଡ଼ାଗ । ଆଡ଼ତାଳ ।

ଏଥିପର । ସ୍ନେହ କର । ଥିଲେ ଦୁଃଖ କ ରହିବ ଗୋ । ପଦ ।
ଜଗି ବସିଥିବ ଯାହାପାଇଁ । ରଜମୀ ଗଲା ଉତାରୁ ପାଇ
ସେଲ୍ନା ଆସି ହସି ଯେବେ ବଚନ କହିବ ଗୋ । ୧ ।
ଅନେକ ଯତ୍ନେ ଲ୍ଲେଡ଼ାଇ ପୁଣି । ପକ୍ୱ ତାମ୍ବୂଳ କୁସୁମ ଆଣି ।
ରଖି ରଖି, ଗଲେ ଦୁଖି । ତହିଁକ ସୁଖ ନୋହିବ ଗୋ । ୨ ।
ଆଜ ଜଣକର ଧାଇଁଗଲେ । ଏକାନ୍ତରେ ବସି ଭାଳୁଥିଲେ ।
ଜାଣି ଜାଣି, ଶୁଣି ଶୁଣି । ତାହା ଦେହ କ ସହିବ ଗୋ । ୩ ।
ରଘୁନାଥ କବଚନଶାନାଥ । କହଇ ସକଳ ମନୋରଥ ।
ପୂର୍ଣ୍ଣ ହେବା ପାଇଁ ଦବାନଶି ପଥ କେ ଗୁହିବ ଗୋ । ୪ । ୩୬ ।

## ଶ୍ରୀକୃଷ୍ଣ ପ୍ରତ ରାଧା ।

ରାଗ ଲଳତ । ଏକତାଳ ।

ଏତେ ବେଳକୁ । ଏତେ ବେଳକୁ ମୁଖ ଦଶିଲ ଆଜ ।
ପଥ ବଣା ହୋଇଲେ କ ବ୍ରଜ-ଯୁବରାଜ । ପଦ ।

ପର ହର ଟର ପ୍ରୀତି । ଆନ ରମଣୀରେ ମାତି । ମୋ ପାଶକୁ ଆସିବାକୁ ପାଇଲ କି ଲଜ୍ଜା । ୧ ।

ଯା ଭୁଲେ ମାତିଲ ନିଶା । ସେବା କେମନ୍ତ ସୁରସା । ବୁଝିବାକୁ ଓଲଡ଼ୁଥିଲେ ମୋ ସଖି-ସମାଜ । ୨ ।

ମିଳିବାରୁ ଓଷ୍ଠ ସୁଧା । ଜିବାରୁ ଅନଙ୍ଗ ବାଧା । ଦେଖୁଛୁ ଏବେ ଶ୍ରୀଅଙ୍ଗ ଦର୍ଶେ, ଭିନ୍ନ ତେଜ । ୩ ।

ତୁମ୍ଭେ ଆସିବା ସମୟ । ଜାଣି ହୋଇ ତୋଷମୟ । ଜଗି ବସିଥିଲି କୁଞ୍ଜେ ସାଜି ଫୁଲ ଶେଜ । ୪ ।

ଶୁଣି ରାଧା ଭଙ୍ଗି-ଚିର । ମଥା ପୋତିଲେ କିଶୋର । ଭାବ କହେ ରଘୁନାଥ କବିଦ୍ୱିଜରାଜ । ୫ । ୩୭ ।

ରଥୋଦ୍ଧତା ବୃତ୍ତ ।

ଏପରି ସପରିହାସ ଭାଷକୁ ।
ଭାଷିଲେ ତ ବୃଷଭାନୁ-ନନ୍ଦିନୀ ।
ନନ୍ଦସୂନୁ ଚନ୍ଦ୍ର ଯା ତ ପାଶକୁ ।
ବୋଇଲେ ଅଟକ ଏ ବଶୀଖିକା । ୪୫ ।

ପୃଥ୍ୱୀ ବୃତ୍ତ ।

ନ ଯାଅ ଧନି ପାଶେରେ ନବକିଶୋର ଜାରଗଣୀ ।
ସୁଜାନ୍ତି ନୁହ ପ୍ରୀତିରେ ସବୁକଥା ବୃଥା ଜାଣିଲି ।
ମଜାଇ କହିଲ ପରି ମଣିଚ କି ପଟେତ ଚିତ୍ତରେ ।
·ସୁଜାଣ ଚଣ ପ୍ରାଣ୍ତ ହେ ଚଳିବ ନାହିଁ ତା ଏଣିକି । ୪୬ ।

ରାଗ ଦକ୍ଷାରବା । ଆଡ଼ତାଳ ।

ରାଧା ପୁରତିକୁ ଯା ନା । ଶଠ ଲମ୍ପଟ କା,ନା । ଜାଗର କରି ସେ, ନବୀନ କିଶୋରୀ । ନେଉଛି କେତେ ଯାତନା । ୧ ।

କେଉଁ ଯୁବତୀ । ସଙ୍ଗରେ ନିଶି ମାତି । ପୂରିଲ ମନ କାମନା ।୨।

ତ୍ରିପୁ ସଖିକ । ପାଇବୁ ଆଉ ନକ । ମଦନ କରନ୍ତୁ ଗ୍ରବନା ।୩।
ଘେନ ମୋ ବାଣୀ । ଏଠାରୁ ବେନୁପାଣି । ଚଳ କଳହ ଲଗାନା ।୪
ବୀର ପ୍ରତାପ । ଶଙ୍କର ଦେବ ଭୂପ । ଗ୍ରଷେ ଉଗାର ବ୍ୱସନା । ୫।

ଲଳିତାଙ୍କ ପ୍ରତି ବିଶାଖା ।

ଇନ୍ଦ୍ରବଜ୍ରା । ବୃତ୍ତ ।

ହେ ପ୍ରାଣତୁଲ୍ୟେ ଲଳଦ୍ୱେ ତୁ ଜାଣେ ।
ଏ ପ୍ରାପ୍ତ ପ୍ରୀତି କର୍ନ୍ତନ୍ତି କେ ବା ।
ଯେ ପ୍ରାପ୍ତ ସେ ଭ୍ରଷି ନ ଆସି ରହେ ।
ସେ ପ୍ରାପ୍ତ ଆସି ପ୍ରିୟଭ୍ରଷ ଭ୍ରଷେ । ୪୭ ।

ରାଗ ଧନାଶ୍ରୀ । ଏକତାଳି ।

ସନ୍ମି ସେ ପ୍ରୀତିରେ ସତେ କି ଲଭ ଗୋ । ଶଏ କଥାରେ ସତ ଯା ନ ଥିବ । ପଦ ।

ନିତି ଆନ ଦେଇ ଦେଇ । ନକର ବୋଲି ଏ କହି, ତେତିକି ବେଳରେ ଯେବେ, ତା ପାସୋର ଦେବ । ୧ ।

ସରାଗ ଥିବ ବାହାରେ । ନିରାଶ ଥିବ ଭିତରେ । ପରାଣ ବିକଲେ ତାକୁ । ଫଳ କି ମିଳିବ । ୨ ।

ହିତ ବୋଲି ଭଜିଥିଲେ । କିତବ ପଣ ସେ କଲେ । ଲିତାଏ ହେଲେ ତାଠାରେ । ଲୋଭ କି ବଳିବ । ୩ ।

କହେ ରସେ ରଘୁନାଥ କବି କୁମୁଦମୀନାଥ । ସ୍ନେହେ ମିଶିଥିଲେ ମନ ଛୁଡ଼ି କେ ପାରିବ । ୪ ।

ବିଶାଖାଙ୍କ ପ୍ରତି ଶ୍ରୀକୃଷ୍ଣ ।

ଶିଖରଣୀ ବୃତ୍ତ ।

ବିଶାଖେ ଏବାଣୀ ବିତର କର ଗୋ କାହିଁକି ସତେ ।
ବିଟଖାରେ ଶ୍ରଦ୍ଧା ବିହିତ କରିବା ଉତ୍ତମ କଥା ।

ନଶାରେ ଆଶାନରେ ନମଜ ଭମିଲ କୁଞ୍ଜଗହ୍ୱନେ ।
ମିସାରେ ଯୋଷାରେ ମିଳବ ସବୁ ସମ୍ପତ୍ତିପଦ ମତେ ।

ରାଗ ଧନାଶ୍ରୀ । ଏକତାଳୀ ।

ଏତେ ବିମୁଖ ମୋଠାରେ କାହିଁପାଇଁ ଗୋ । ତେତେ ଅପରାଧୀ ମୁହିଁ ହୋଇ ନାହିଁ ଗୋ । ପଦ ।

କଂକେଲି-କୁଞ୍ଜରେ ବୋଲି, କହିଥିଲ କୁନ୍ଦବଲ୍ଲୀ । ସେକେତ କଥା ମନେ ରହିଲା ନାହିଁ ଗୋ । ୧ ।

ବକୁଳକୁ ଜବା ବୋଲି । ବଞ୍ଜୁଳ-କୁଞ୍ଜକୁ ଗଲି । ସୁକୁମାରୀକ ଲୋଡ଼ିଲି । କେତେ ଠାଇଁ ଗୋ । ୨ ।

ଲଳିତାନନ୍ଦଦା କୁଞ୍ଜେ । ଲୋଡ଼ ଲୋଡ଼ ଗଲି ମୁଁ ପେ । ଅଳୀକ ନୁହଇ ସବୁ ସତ ଏହି ଗୋ । ୩ ।

କହେ ରସେ ରଘୁନାଥ । କବିକୁମୁଦନାଥ । ରହେ କାହାର ଆସକ୍ତ ହେଲେ ସ୍ନେହୀ ଗୋ । ୪ । ୪୦ ।

## ଶ୍ରୀକୃଷ୍ଣଙ୍କ ପ୍ରତି ଶ୍ରୀରାଧା

ଶାର୍ଦ୍ଦୂଳବିକ୍ରୀଡ଼ିତ ବୃତ୍ତ ।

ଓଷ୍ଠେ କଜ୍ଜଳ ଭାଲ ସିନ୍ଦୂର ଶିତା ଲକ୍ଷା ସୁବକ୍ଷାନ୍ତରେ ।
ପାର୍ଶ୍ୱେ କଙ୍କଣ ଚିହ୍ନ ଗଣ୍ଡଯୁଗଳେ ତାମ୍ବୂଳ ମୁଦ୍ରାଦ୍ୱରେ ।
କେ ବା ସାଜିଛି ଏ ସୁବେଶ ଯତନେ ଧନ୍ୟା ଟି ସେ ସୁନ୍ଦରୀ ।
ଭାଗ୍ୟ ଗୃହିଲି ମାଲବାସଛବି ମୁଁ ରାସେ ରହି ଜାଗରେ ।୦୯

ରାଗ ପରଜ ଆଡ଼ତାଳି ।

ଆନେ ପରା ନ କର ପ୍ରୀତି । କହ ଯେ ନତି । ପଦ ।
ଏହି ଦେହେ ଦେଇ କର । କେତେ ଯେ ନପ୍ରମ କର ।
ଲଲାଟେ କାହା ସିନ୍ଦୂର । ଦେଖ ଟି ଅଧରେ ମୁକୁର । ୧ ।

ତୁମ୍ଭେ ତ ବଞ୍ଚକ ନୁହ । ଜାଣ କେତେ ପର ସ୍ନେହ ।
ଅଙ୍ଗେ ଯା ଯାବକ ବହ । ଦେଖି ସହେ କାହା ଦେହ । ୨ ।
ସେ ସୁନ୍ଦରୀ ଅଳଙ୍କାର । ପ୍ରତି ଦ୍ରଷ୍ଟାକେ ତୁମ୍ଭର ।
ମଣ୍ଡନ କରଜ ଯାର । ହସେ କେମନ୍ତ ସୁନ୍ଦର । ୩ ।
ତା ସୁରୁ ନେଇ ଅଞ୍ଜନ । ଅଧରେ କର ରଞ୍ଜନ ।
ପିନ୍ଧିଚ କାହା ବସନ । ଭଲ କର ଥରେ ଚିହ୍ନ । ୪ ।
ଭଣେ ରାମକୃଷ୍ଣ ଗିର ପ୍ରୀତିକି ମୋର ଜୁହାର ।
କହୁଚି ମୁଁ ଯୋଡ଼ି କର । ମୋ ପରି ତାକୁ ନକର । ଆ । ୫ । ୪୧

## ଶିଖରଣୀ

ପରାଣେକ ପ୍ରାପ୍ୟେ ଦୁଇତନୁ ସଦା ହାସ ସହକେ ।
ମୃଦେ ପ୍ରେମା ଭେଦେ ମିଶରଦ ଥିବା ସନ୍ତ ସୁଖେ ।
ତବାଙ୍ଗେ ସେ ରାମା ନଖରଦପଦେ ବାଧଇ ମତେ ।
ମୁଁ ଯେ ହନ୍ତସ୍ୟାନ୍ତେ ପରାଣ କଲି ତା ସମ୍ଭୃତ ମନେ । ୫୦

ରାଗ ଯଦୁକୁଳ କାମ୍ବୋଜ ।

ତାଳ ଆଦି ।

ଦୁଇ ଦେହ ଏକ ପ୍ରାଣ ବୋଲିବା କଥା ।
ମୁହିଁ ହେଜିଲା ଏବେଣ । ସେହି ନୁହଇ ଅନ୍ୟଥା । ୧ ।
କରଜକ୍ଷତ ତୁମ୍ଭର । ଉପରେ ଦେଖି ସତ୍ଵର ।
ମୋର ଶରୀର ହେଉଚ୍ଛି । ବ୍ୟଥିତ ପ୍ରବଳତର । ୨ ।
ଅଧରେ ଅଞ୍ଜନ ସୁରୁ । ସଧରେ ଧରି ଥିବାର ।
ବାଧକ ସେହି ହେବାରୁ । ହୃଦ ମ୍ଳାନ ସେ ହେତୁରୁ । ୩ ।
ଶୟନ କୋହି ଥିବାରେ । ନୟନ ଘୂର୍ଣ୍ଣିତ ତରେ ।
ଥୟରେ ମୁ ରହିଁବାରେ । ଆପୂତ ନ ରହେ ଥରେ । ୪ ।

ଶୁଣିଥିଲା ଯାହା ମୁହିଁ । ଜାଣିଲା ପ୍ରତ୍ୟକ୍ଷେ ତାହା ।
କଣିଛୁ ତୁମ୍ଭଙ୍କ ସେହ୍ନ । ପୁଣି ରଘୁନାଥ କହ୍ନ । ୫ ।

## ଶ୍ରୀରାଧାଙ୍କ ପ୍ରତି ଶ୍ରୀକୃଷ୍ଣ

ଅମିୟା । ବୃତ୍ତ ।

ସିନ୍ଦୂର ମୁଛ ଲଲାଟକ
କଜ୍ଜଳ ଏକ ଅଧର ମୃଗମଦ-ରେଖା ।
ରଦକ୍ଷତ କି ଭୃଙ୍ଗାଘାତ ।
କେତକୀ ନ ନଖରେଖ ସତ । ୫୧ ।

ରାଗ ମଲ୍ଲୁଆ, ଆଡ଼ତାଳି ।
କି ବୁଝି କରବୁ ଅବୁ ଜାଣି ଜାଣି ।
ଦେଖୁ ଯେବେ ଏପରି । ସ୍ୱବଶି ରମଣି ଅଭ୍ୟୁତ୍ଥାଣ ପରି ।
ଦେବୁ ଯେବେ ଅପବାଦ ନବରୁଚି । ୧ ।

ସିନ୍ଦୂରଗମନୀ ବନ୍ଧୁ ଶୁଣ ଶୁଣ
କାମ୍ୟ ନହୋଇ ଏହା ସୁନ୍ଦର କେମନ୍ତେ ହେବ ବୋଲି ସିନ
ଗୈରିକ ହେଲେ ସିନ୍ଦୂର କି ଗୋ ଏହା । ୨ ।

ଅଂଜନ ନୋହେ ରଂଜନ ମୃଗମଦ
ଖଞ୍ଜନ ନେତ୍ର ଯେନ କଞ୍ଜଘ୍ରାଣ ବଶୁ ଭୃଙ୍ଗଚାରେ ଫେରେ ।
ଚିତ୍ତେ କ୍ଷତ କଲ ହୃଦେ ସତ ମାନ । ୩ ।

ନଖରେଖ ବୋଲି ଦୁଃଖ ରଖନା ରେ ।
ଦେଖ ନେତ୍ର ସୁମୁହିଁ ମୁଖରେ ଆଶୁ କେତକୀ ଡଳଦଳ ।
ବକ୍ଷରେ ଲଟିଲି ରଘୁନାଥ କହ୍ନ । ୪୦୩ ।

## ଶ୍ରୀରାଧାଙ୍କ ପ୍ରତି ଶ୍ରୀକୃଷ୍ଣ ।

ରଥୋଦ୍ଧତା ବୃତ୍ତ ।

ନୂତନେ ଲଭିଲ କାର ପ୍ରୀତିକ ।
କେଳରେ ରହିଛ କାଳି ରାତିକ ।
ରାଗରେ ତ୍ରମ ସୁଧାର ଏନକ ।
ଏଣିକ ନ କହ ଭଙ୍ଗି ବାଣିକ । ୦ । ୧୨ ।

ରାଗ ସାରଙ୍ଗ । ତାଳ ଠଲୁଆ ।

ଏ ଜାର ରାତି ଜାଣିଲ ଏଣିକ । ପଦ ।
ଯାର ସହିତ ରଜନୀ ଯାକ । ଜାଗର କଲେ ହେ ରସିକ ।
ତାର ତାର କରଜଗାର । ହାର ହୋଇଛି ହୃଦୟ ଉପର । ୧ ।
ଦନ୍ତ ଚିହ୍ନ ଅଧରେ ଦେଖି ।
ଅନ୍ତରେ ମୁନେ ହୋଇଛି ଦୁଃଖି ।
ଅନ୍ତର ନୋହିବାକୁ ଚନ୍ଦ୍ରକାନ୍ତ
ପଟର ଯନ୍ତର ଏ କ । ୨ ।
ପାଥୋଜ-ମୁଖି କଶୋର କଥିତ ।
ଏଥର ହେଲେ ହୁଅ ନବର୍ତ୍ତି ।
ହାତଧରି କହେ ରଘୁନାଥ ।
କବ ଯାମିନନାଥ ଏତକ । ୩ । ୪୪ ।

## ଶ୍ରୀରାଧାଙ୍କପ୍ରତି ଶ୍ରୀକୃଷ୍ଣ

ମନ୍ଦାକ୍ରାନ୍ତା ବୃତ୍ତ ।

ରମ୍ଭା ରମ୍ଭା ଉରୁ ଉରୁ ବଶେ ଲୋକରେ ଲୋକରେ ଯେ ।
ନାହିଁ ରମ୍ଭା ସୁରବରବଧୂ ଶ୍ରେଣି-ଜମ୍ଭାରି ଠାରେ ।

ସମ୍ଭାଷନ୍ତେ ବଚନ ହସିତ ପ୍ରେମ ସମ୍ଭାବନାରେ ।
ମନ୍ଦାନନ୍ଦ ରହିବ ଦୂରନ୍ତେ ଶମ୍ଭୁଶକ୍ତ ନ ପାଇ । ୫୩ ।

ରାଗ କଲ୍ୟାଣୀ । ଏକତାଳ

ଏ ରସମୟ ବସନ୍ତ ।
ବିରସ ନକର ଚିତ୍ତ ।
ସରସରେ ପ୍ରାଣ ମିତ ।
ହରଷ କର ଉଦିତ । ୧ ।
ଭ୍ରମର ଝଙ୍କାର ଶୁଣି ।
କାମର ବଡ଼ିଶୁ ଆଣି ।
ଚାମର ପଣରେ ପୁଣି ।
ମୋ ମରମେ ବିନ୍ଧେ ଟାଣି । ୨ ।
କାନନ ପ୍ରିୟ ଡାଳରେ ।
ମନ ନ ରହେ ଥିରରେ ।
ଦିନ ନ ସରେ ଦୁଃଖରେ ।
ଆନନକୁ ଟେକ ବାରେ । ୩ ।
କବିଚନ୍ଦ୍ର ରଘୁନାଥ ।
ଭାଷି କହେ ମନୋରଥ ।
ଅବିଲମ୍ବେ ହେବ ସାର୍ଥ ।
ସେବିଲେ ଯୁଗଳ ପଥ । ୪ । ୭୪ ।

## ଶ୍ରୀକୃଷ୍ଣଙ୍କୁ ରାଧା ।

ଯାମିନୀ ନେଲେ ଯା ସଙ୍ଗେ । କାମୀ ସେ କାମିନୀ ଭୁଲେ ।
ରସ ହେ କେଳି ରସରେ । ବାସଙ୍ଗେ ଭୃଙ୍ଗବର୍ଦ୍ଧନେ । ୫୪ ।

ରାଗ ଶାବେରୀ । ଆଡ଼ତାଳ ।

ଯା ତାକୁ ମନ୍ତ୍ରୀ । ଜାଣିଲ ଜାଣିଲ ମନ୍ତ୍ରୀ । ଯା ଭୁଲେ ଯାମିନୀ
ନେଲ । ଜାଣୁ ମଣି ସେ ଜାଗରେ ଯା ତାକୁ ମନ୍ତ୍ରୀ । ୧ ।

ସୁନ୍ଦର ଅଞ୍ଜନ ଚନ୍ଦ୍ର । ସୁନ୍ଦରଚରେ ବନ୍ଧ୍ ହର ନେହ ତା ମନ ।୨।

ନଣା ଜଗାଇ କୁଞ୍ଜରେ । ଚସାଇବାକୁ ଦଣାଅ ମୁଖ
ପ୍ରାତରେ । ୩ ।

କହଇ କବି ସୁଧାଂଶୁ କହିଲେ ରାଧା ମୋହନ କୁହନା ବନ୍ଧୁ । ୪ ।

ପଦ୍ୟ—ମନ୍ତ୍ରମନ୍ତ୍ରେ ଭରମନେ । ପ୍ରିୟୁକେ ପ୍ରିୟୁକେଷନେ ।
କାନ୍ତେ କାନ୍ତେ ମସୃ ରଚନ । ଭାଷ ଭାଷ ହ୍ରିତାନନେ । ୫୫ ।

ରାଗ ଶ୍ରୀ । ଏକତାଳି ।

ଏକ ଭଙ୍ଗି ତୁ । ଅଙ୍ଗୀକାର ନ କରୁ । ରଙ୍ଗିମାଧର ନବ-
ସଙ୍ଗିନରେ । ପଦ ।

ସଙ୍ଗରେ ମୋହର । ରଙ୍ଗରେ ବହାର । ଭୁଙ୍ଗସ୍ରମାରେ ତୁ ନ
ଭାଙ୍ଗ ଆଶାକୁ ଭୂରୁ ଭଙ୍ଗିନରେ । ୧ ।

ବାମ ନୟନ ତୋ ବାମ ଦେଖି କାମ । ଯାମ ଯାମକରେ ।
ଝାମ ଦେଜତ ହେମବରନରେ ।

ସୁନ୍ଦରି-ମଣି ଅସୁନ୍ଦର ଏ ରୀତ । ମନ୍ଦ ହ୍ରନ୍ଦ ବନ୍ଦ ବନ୍ଧୁ ।
କୁନ୍ଦରଦନ ଗୁଣ-ବନ୍ଧନରେ ।୩ ।

ପାଶରେ ବସ । ଦୋଷକୁ ନ ଘୋଷ । ଭାଷଇ ରଘୁନାଥ
ଭାଷ ଭାଷ ବଧୂହାମିନରେ । ୪ । ୪୭ ।

## ରାଧା କୃଷ୍ଣଙ୍କ ପ୍ରତି

ଗଦ୍ୟ—ସୁକୁମାର ନୃପ-କୁମାର । ନୂତନ ମାର କେଉ
ବାମାର । ଗଞ୍ଜନାଞ୍ଜନ ଦରପଣ ନୁହ ଦେଖ ଦରପଣ ପାବକ ବୁକ

ଅଶସ୍ପୃନେ ନସ୍ପୃନେ ଅସ୍ପୃନ ରହେ ଅସ୍ପୃନେ ନ ହୃଷ୍ଟ ପୃଷ୍ଟ
ବାସରେ ବାଧରେ ରହି ନାଶପାଶରେ ।

ରାଗ ଝିଙ୍ଝୋଟ । ତାଳ ଝୁଲୁଆ ।

ଆହେ ବ୍ରଜପୁର ନରରାଜା ସୁତ, ମୋ ପୁରରୁ ଯା ଯା ।
କର ବନନ୍ତ କହ ତାଠାରେ । ଯହିଁ ଜାଗର କଲୁ ତାଜା । ପଦ ।
ହୃଦେ ଅଙ୍କିତ କରଜରେଖ । ମୁଁ କେତେ କହିବ ଅନ୍ତ
ଅଲେଖ। ଆହେ ବିବେକ । ମୁକୁର ଦେଖ ଦିଶେ ମୁଖ ପ୍ରତିବିମ୍ବ ଯା ।୧।
ଅରୁଣାଧରେ ଦଶନଘାତ । ଘୂର୍ଣ୍ଣିତ ନୟନ ପଲକପାତ ।
କହୁଁ କହୁଁ ଗିର ହୁଅ ଅଚେତ । ବାସରେ ଥରେ ଶୋ ଯା । ୨ ।
ବନଜବଦନ ମଳିନ ତୋର । ନୀଳ-ବସନ ପାଲଟ କର ।
ଯାବକ ହୃଦ ବହିଛୁ ଯାର । ମାନସେ କର ହେତ୍ତା । ୩ ।
ଭଣଇ ଦ୍ୱିଜ ପଦ୍ମନାଭ ଭାବରେ ଯତ୍ନ କଲୁ ଅଭାବ । ଲଭିବ
ପୀରତି ପରମ ଲାଭ । ଚନ୍ଦ୍ରବଦନ ଧୋ ଯା । ୪ । ୪୭ ।

ଶ୍ରୀ ରାଧାଙ୍କୁ କୃଷ୍ଣ ।

ପଦ୍ୟ

ରହରେ ରହରେ ବନ୍ଧୁ । ନିରଖିରେ ନିରେଖିରେ । ଆଦର
ଆଦର ଯା ନା । ଭାଷ ଭାଷ ସ୍ମିତାନନେ । ୫୭ ।

ରାଗ ଭୈରବୀ । ଏକତାଳି ।

ଦରହାସି ଏବେ ଆଦର । ଦର ନାଶ ହୃଦର । ହର ଦୁଃଖ
ମୋହର । କର ଉଦ୍ଧାର । କାର ଗୁରୁ ଗିର ସାର ନ କର ଶର ।
ବାର ବାର ମାର ମାରଇ ଉରେଁ ତାର । ୧ ।
ଯଶ ଶଶୀକ ଭୁ ପ୍ରକାଶ । ନାଶ ଧୂର-ତମସ । ବଶ କୋଳେ

ନାଗ୍ରଶ ରସ ବରସ । ଦାସ ଆସ ତୁ ନ ନାଶ ସରସ ରସ । ଭ୍ରଷ୍ଟ
ଭ୍ରଷ୍ଟ କାଶିଦାସ ବଚଣ ଚୋଷ । ୨ ।

ବହି ରଘୁନାଥ କହଇ । ଏହି ଭ୍ରଟେ ସୁଦେହ । ତହିଁ କ କର
ସହ । କହଲ ମୁହିଁ । କାହିଁ ପାଇଁ ସହ । ଭୂହିଁ ବସିଛୁ ମହି । ନାହିଁ
ନାହିଁ କେହି ଜାହି ବହିବୁ ତୁହି । ୩୪ ।

ମନ୍ଦାକ୍ରାନ୍ତା ।

ସଧା କ୍ରୋଧାବଶରୁ ଅଧିକେ ଭ୍ରଷିବାରେ ନିରାଶେ ।
ବାଧାକ୍ରାନ୍ତେ ରହି ରହି ପୁନଃ ପଛକୁ ଚାହିଁ ଚାହିଁ ।
ଶ୍ରଦ୍ଧା କୋହି ହୃଦୟଭିତରେ ଖିତରେ ଚିନ୍ତାବାରେ ।
ସଧାଗ୍ରେ ଏ ବଚନ କହିଲେ ସଙ୍ଗିନୀ ପ୍ରେମ ଭରେ । ୫୭ ।

ଶିଖରିଣୀ ।

ସୁଧା ସଧା ବାଣୀ ନ କହ ସହି ଶ୍ରଦ୍ଧାବଶୁ ପୁଣି ।
ମୃଧା କ୍ରୋଧାବେଶେ ଚରୁଚ ନଖଅଗ୍ରେ ବସୁମତି ।
ସୁଧାରେ ସଧା ତୁ ସଦୟ ହୁଅ ବାଟେ ଚରଣେନେ ।
ବଧାନେ ସୁଚ୍ଛନ୍ଦେ ରସ ମଦନ ଭାବେ ପରଶନେ । ୫୮ ।

ରାଗ ଆଶାବରୀ । ଆଡ଼ତାଳ ।

ଏବେ ହେଲେ ମନ । ମୋହନକୁ ଧନ । ଦୁଃଖରୁ ରଖ
ଉଧରି ଧରି । ପଦ ।

ନିକଟରେ ଚୋର । ଥିବାକାଳେ ମୁର-ବାରଣିକୁ ସେ କେଶରୀ
ପରି । ଝାଣପଣେ ମାର । ମାତିବାରେ ଶର । ରହିଲେ କୁଞ୍ଜବିହାରୀ
ହାରି । ୧ ।

ଯାହାକୁ ତ ଚାହିଁ । ମୋହିତ ହେବେ ସେହି ରମା ଆଦି
ମଦନାରିନାରୀ । ସେ ଚୋର କଥାରେ । ନ ଭେଟିଁ ତ ତାରେ ।
ରହିଛନ୍ତି ନଡ଼ କରି କରି । ୨ ।

କୁଞ୍ଜ ସଦନକୁ ସେ ଯିବା ବେଳକୁ । ଦେବାରୁ ତୋ ପରବାସ୍ତ ବର । ଶୁଣ ତୁ ଏଣିକ । ନ ଯାଇ କେଣିକ, ରହିବେ ସେହି ଆଦର ଦର । ୩ ।

ବୋଲୁଥିଲୁ କାଳ । ତୁ ପରା ଛଇଳୀ । ଜୀବର ଜୀବ ମୋହର ଘର । ଆଜ ଗଲେ ଫେର । ଆଣ ବୋଲାକର । ଟଢ଼ିବ ସିନା ଆତୁର ହୁର । ୪ ।

କହେ ରଘୁନାଥ । କେବେ ନିଶାନାଥ । ମୁଁ କହିବାର ପରୁର ସୁର । ସଖୀ ସଙ୍ଗେ ବସି । ଦଣ୍ଡାକର ହସି । ତୋ ଯଶ ରହୁ ଏ ପୁରୀ ପୂର । ୫ । ୪୯ ।

## ସଖୀଙ୍କି ରାଧା ।

### ଶିଖରଣୀ ।

ପ୍ରଭାତେ ଲକ୍ଷାଢେ ରଦ ପଦ ମୁଁ ଯେ ବୃହିଁତ ସଖି ।
ଲଲାଟେ ସିନ୍ଦୂର ପ୍ରକଟରୁ ଥିଲି ସୁନ୍ଦରତରେ ।
ଅନନ୍ଦ୍ରେ ତା ନେନେ ପଲକତ ପଢ଼େ ଦୃଷ୍ଟିତ ବଶେ ।
ସଦା ଆହା ତାହା ବଚନ କହିବା ଦୂରକୁହନା । ୫୯ ।

### ରାଗ ଢିଳାମନ୍ତ । ଆଡ଼ତାଳ ।

ନୋହିଲେ ନୋହୁ ସେ ପୀରତି । ସହି କେ ନିତ ସହିବ ଗୋ ଏଡ଼େ ଅମିତ । କହିବା କଥା ଯେ ଗୁଡ଼ । ନୋହିବ ଭାବରେ ବୁଡ଼ । ବହି ଭଙ୍ଗେ ଭଙ୍ଗେ ସଙ୍ଗତି । ରହିଲେ ନିତି । ୧ ।

ରଖିଥିଲି ଯେହି ଗତିରେ । ଅଖିଳ ସୁଖେ । ସୁଖୀ ହୋଇଥିବ ମତିରେ । ଦେଖିଣ ମୁଁ ସାକ୍ଷାତରେ । ଲେଖିଲି ପର ଶପରେ । ଅକ୍ଷୀଣରେ ଅଛି ଜାବକ । ସୁଖିତ ମୁଖ । ୨ ।

ଏ ବିରହ ବାଧା ସଙ୍ଗତି । ଅବିଲମ୍ବେ । ସବିଧରେ କହୁଁ ଶ୍ରୀମତି । କବିଚନ୍ଦ୍ର ରଘୁନାଥ । ଭାବି କହେ ପ୍ରେମପଥ । ସେହିଲେ କି ଗତି ରହି । ଛବି କି ଗୃହୀ । ୩ । ୫୦ ।

## ସଖୀଙ୍କ ପ୍ରତି ରାଧା ।

### ପୃଥ୍ୱୀ ବୃତ୍ତ ।

ଭ୍ରୂଭଙ୍ଗିମା ବିମୋହନେ ପ୍ରଚଳଭ୍ରୂଲତା ନର୍ତ୍ତନେ ।
ଭ୍ରୂଭଙ୍ଗିମା ବିମୋହନେ ମଧୁର ବଂଶୀଗୀତସ୍ୱନେ ।
ବନେ ଭ୍ରମବନରେ ଭ୍ରମି ଭ୍ରମି କରାଇ କୁଞ୍ଜାଳୟେ ।
ନିତାନ୍ତ ସୁରତାର୍ଥୀ ସେ କି ତବ ସଙ୍ଗତ ଭାଷ ନା । ୬୦ ।

### ରାଗ ଝିଞ୍ଜୋଟି । ଆଡ଼ତାଳ ।

କହନା ସଜନୀ ରେ ଆଜ । ସହି ନ ପାରେ ଶ୍ୟାମ ପ୍ରେମ ବାଜ । ପଦ ।

ସଙ୍କେତରୁ ଆଶା କଲି । ଥିଲି ଅଙ୍ଗ ସଙ୍ଗ ଭଳି । ନ ଦେଖି ଦୁଃଖ ପ୍ରବଳି । ଭେଦିଗଲାନି ମରମକୁ ବଳି । ୧ ।

ଆସିବ ବୋଲି ସେ କହି । କୁଞ୍ଜରେ ମତେ ବସାଇ । କାହା ପ୍ରୀତିରେ ସେ ଯାଇ । ରହିଲେ କଣି ମାନସ ମଜାଇ । ୨ ।

ତୋ ବାଣୀ ପରତେ କରି । କୁଳ ଶୀଳ ପରି ହରି । ମୋହନେ ପ୍ରୀତି ଆଦରି । ଏବେ ଆସି ମୁଁ ନୋହିଲି କାହାରି । ୩ ।

ଦ୍ୱିଜ ରଘୁନାଥ କହି । ଶ୍ରୀମତି ବିରସ ଗୃହୀ । ନ ଭାଳ ଆଜ ତୁ ସହି । ଆଣିବି ତାଙ୍କୁ ମାନସ ରସାଇ । ୪ ।

### ମାଳିନୀ ।

ସରସମୟ ବସନ୍ତେ କାଳ ନେବୁ କେମନ୍ତେ ।
ନ ଦେଖି ନୟନ ପ୍ରାନ୍ତେ ଦୁଃଖ ଦେଇ ତୁ କାନ୍ତେ ।

ବ୍ରଜବଧୂ ସୁରତାନନ୍ଦ ବାଞ୍ଛି ଥାନ୍ତେ ପଣଚନ୍ଦ୍ର ।
ସେପରି ସ୍ୱଚ୍ଛନ୍ଦ ବଚନ ବୃନ୍ଦ ନହୁଁ ତ ଶାନ୍ତେ । ୭୧ ।

ରାଗ ପଟ୍ଟଳ । ଆଡ଼ତାଳ ।

ଶ୍ୟାମ ପ୍ରୀତିକି କରୋର ରେ । ସଂଚ ଦେଖୁକ ପାଶୋର । ପଦ ।

ଏରସ ବସନ୍ତ ସମୟ ହୋଇଛି ଯେ ପିକ ଡାକରେ ଧୃତି ଖସୁଛି ।
ଯେତେବେଳେ ବଧୂ କହେ ହୋଇଯିବ ଅମ୍ଭି ଗୋ ।
ସାହା ହେବ ସେ ନର ଅଭୀନ୍ତିକରେ ଗତିକି । ୧ ।

ଯାହାର ହାର ବିହାର ଆହାର ସବୁରେ ଗୋ । ବାହାର ହେଲନ ତୋ ବାହାରେ । ଯେତେବେଳେ ହେଲେ ତୋ ମନ ନହେ ସମାଧାନ ଗୋ । ଏଥୁବଳି ଦେଖୁ କି ବିପତ୍ତିକି ରେ ଚିତ୍ତିକି । ୨ ।

ଭେନା ଭେନରେ ମନାଇ ଥିବାର ପରତ୍ର ଗୋ । ମନା ହୁଅଇ ସେ ଯେବେ ଆସି । ମନାକରି ପୁଣି ଲେଉଡ଼ି ଅଣିବ ବୋଇଲେ ଗୋ । ଆଜ କେହ୍ନ ଅଛି ଗଜଗଣ୍ଡାଙ୍କରେ ଗତି । ୩ ।

ଯାହାକୁ ଦେଖିଲେ ପଶୁପକ୍ଷିମନ୍ତ ଭୁଲେ ଗୋ । ପନ୍ତ ସଣ୍ଟ ଗାନ୍ତ କେ ପର୍ବତରେ । ତୋହୋର ପ୍ରେମକୁ ସେ ଚାହିଲେ ଅନୁସରି ଗୋ । କାହିଁକି ନୋହୁଛି ମେ ମୁରତି କି ରେ ରତିକି ।୪।

କବି କୁମ୍ଭଦବାନ୍ଧବ ରଘୁନାଥ କହେ ଯେ । ହାସରସ କଳଭୁଂକ ମାତି । ଯୁଗଳ ହୋଇ ଯେ ରହୁଥାଇ ନିତି ନିତି ଯେ । ଦୁର କରେ ଆସିଲେ ମୁଁ କତିକି ରେ କତିକି । ୫ ।

## ସଖୀଙ୍କି ରାଧା ।

ମାଳିନୀ ।

ପରିହରି ସବୁ ସଙ୍ଗୀରଙ୍ଗରେ କାହ୍ନି ମାତି ।
ବିଚରି ମଦନ-ଖ୍ୟାତି ଏଣ୍ଟିକି ସାଧୁ ଜାତି ।

ବଳ ନ କହ ତୁ ଦୂତୀ କାଲୁ ସେ ନାଗରୀ ।
କ ଚେବ ବରଜଜାତ ଜାରତାରେ କ ମତ । ୬୩ ।

ରାଗ ଯଦୁକୁଳକାମୋଦ । ତାଳ ଆଦି ।

ମୁଁ ହେଲ ଅସାର ଯେବେ ସେ ହେଲ ସୁସାର ମା । କହ କହ ସ୍ନେହତାଇ ମହତ ନ ସାର ମା । ପଦ ।

ଶ୍ୟାମବନ୍ଧୁ ପ୍ରେମ ପାଇଁ । ବାମ ସେ ହୋଇଛି ମହି । ତା ମନ ଧରିବାରେ ତୁ ପଣଚ ପ୍ରସାର ମା । ୧ ।

ଦେଖିଛି ମୁଁ ସାକ୍ଷାତରେ । ଦେଖିଲ ପର ଚତ୍ତରେ । ଲଖିଅଛି ଅଳତାବିନ୍ଦି ସେ କେଉଁ ଯୋଷାର ମା । ୨ ।

ପାଟକକୁଳର ଲେଶେ । ଅଟକ ନ ମାନ ମୁଁ ସେ । ଭଟ ସଙ୍ଗେ ଭୁଲିବାର ଫଳ ମୋ ଦଶାର ମା । ୩ ।

କବିଚନ୍ଦ୍ର ରଘୁନାଥ । ଭାବ କହେ ଏତ ସତ । ଥିବର ନାହିଁ ଯାହାର କହିବା ଭାଷାର ମା । ୪ ।

## ରାଧାଙ୍କ ସଖୀ ।

ମାଳିନୀ ।

ବ୍ରଜସୁତ ବ୍ରଜସଙ୍ଗେ ଧେନୁମାନଙ୍କୁ ରଙ୍ଗେ ।
ଧରି ବନକୁ ଯିବାରେ ଶଙ୍କି ସେ ବାରେ ବାରେ ।
କମଳ-ମୃଦୁଳପାଦେ କ୍ଷୁଦ୍ରପାଷାଣ ବାଜି ।
ବ୍ୟଥିତ ଭୟରୁ ଦୁଃଖେ ନେତ୍ରେ ବାରି ଆଶୁ । ୬୪ ।

ରାଗ ଝିଞ୍ଜୋଟି । ଆଡ଼ତାଳି ।

ତୋତେ ସବୁ ନ ଲଗିଲାକି ଶ୍ୟାମ ବାଧା ।
ସଜନି ମୋର, କି ଗଲ ତୋ । ପଦ ।
ସେ ତୋ ଅପଦନ, ତୁ ତାର ଜୀବନ ପରାଏ ଦିଶୁଥିଲ ଗୋ । ୧ ।

ଗୋ ଚନ୍ଦ୍ରରେ ଯାଇ, ଆସୁ ପ୍ରାଣ ଥାଇ, କରେ ପଦ୍ମ ଛଇଳା ଗୋ ।୨।
କଥା ପଢନ୍ତରେ, କହିଲ ମ ଥରେ, ହେଉ କୃଷ୍ଣ ରୁଚିଲୁ ରେ । ୩ ।
ଆଜ ମୁଁ ଏଣିକ, କହିବ କାହିଁକ, ସବୁ ବୁଦ୍ଧି ଆସିଲୁ ରେ । ୪ ।
କହଇ ଗୋପାଳ, କୃଷ୍ଣରାଧା କୋଳ, କରି ସଖୀ ଭଣିଲୁ ଗୋ । ୫ ।

ମାଳଣୀ ବୃତ୍ତ ।

ନ କହ ନ କହ ଦୂଷ୍ଣ, ତାର ଠାରେ କି ମାନ୍ତ ।
କିତବକୁ ଲଭି ଖ୍ରାନ୍ତ କର୍ମ୍ମ ତୁ ମୋର ଗ୍ରାନ୍ତ ।
ମଧୁପ ମଣି ସୁଜାଣ୍ଡ ମଲ୍ଲିକା କୁନ୍ଦ ଯୂଥୀ ।
କରଇ କି ତବ ପ୍ରୀତି ସେ କି ପ୍ରେମ ସୁଜାତି । ୬୫ ।

ରାଗ ସୁରଟ । ଏକତାଳି ।

ଯା ଯାରେ ସଙ୍ଗିନି ତୁ । ତା ଠାରେ ସାର ନାହିଁ ରେ । ପଦ ।

ଖଣ୍ଡଳ-କଥା କ୍ଷଣକୁ ପାର ନାହିଁ ରେ । ତା ଭାବରେ ଭୁଲିଲେ ଉଦ୍ଧାର ନାହିଁ ରେ । ୧ ।

ଯେମନ୍ତ ଘନେ ବିଜୁଳି ଥିର ନାହିଁ ରେ । ସେହିପରି ତା ହୃଦରେ ଶର ନାହିଁ ରେ । ୨ ।

ତୋ ତାରେ ତ ଭିତର ବାହାର ନାହିଁ ରେ । ସେ ଯେନ କହୁଚି ମୋର ନାହିଁ । ୩ ।

ରଘୁନାଥ କହେ ଯା ସ୍ୱୀକାର ନାହିଁ ରେ । ତାକୁ ବଳେ ନେବାକୁ ତ ଜୋର ନାହିଁ ରେ । ୪ ।

ଗଦ୍ୟ

କିଶୋରବର କିଶୋରୀ ନିର୍ଗତ-ପ୍ରରୁଷ-ବଚନ-ରଚନ ଶ୍ରବଣେ ଶ୍ରବଣେ । ନାଗର ନାଗକେଶର କୁଞ୍ଜରେ ତଳ ତଳପରେ ବସି ବଶୀଭୂତ ନୋହିବାରୁ ଧୈର୍ଯ୍ୟରୁ କରିଭେରୁ ମଦନ ବେଦନ କାଳରୁତରୁ, ଭୃଙ୍ଗ-ଭୃଙ୍ଗୀ ସଙ୍ଗୀତରୁ, ମନ୍ଦ ମନ୍ଦ ବାତ ପଲ୍ଲବ -

ଚଳାଚଳୁ, କଳରବେ କଳହଂସକୁଳଭଟ୍ଟଣୀ ମଣିମଞ୍ଜିର ଶିଞ୍ଜିତ କୁଞ୍ଜର-ଗମନୀ କୁଞ୍ଜରେ ପ୍ରବେଶ ଭାବ ଭାବ ବିରହବଶରେ ବିଭ୍ରମ କହ୍ନ ପ୍ରେମବଶରେ । ୧୦ ।

ସ୍ରଗ୍‌ଧରା ବୃତ୍ତି ।

ବାଳା ହେଳା ବଳାନା ରଭସବସରେ ଝଡ ବାଣୀ ସୁବାଣୀ ।
ଲୀଳା ଖେଳାରୁ ମୋହେ ସୁବରନବରନା ଭାବରେ ହାବରେ ମୁ ।
ଡୋଳା ଖେଳାଇ ରଙ୍ଗେ ସୁବସୁଣି ନଥ ତୁ ଜନ ଗୃହେ ପ୍ରଭୂରେ ।
ଚୂଳା ଚୂଳାଙ୍ଗି ଭଙ୍ଗୀପ୍ରକର ପ୍ରକଟନେ ଏ ନିଶାରେ ସୁଧାରେ । ୬୬ ।

ରାଗ ତୋଡ଼ି । ତାଳ ଆଦି ।

କରକରଦନା ଟାଣିକର । ସାର ନ ହାର । ପଦ ।
ବିନା ଦୋଷରେ ନବୀନା । ମନା ନ କର କାମନା ।
ଅନା ବିରସ ହୁଅନା ଜନାପବାଦେ ମଗ୍ନା । ୧ ।
ରସ-ବତି ଭାବେ ରସା । ଭାଷ ସୁମଧୁର ଭାଷ ।
ଦାସରେ ନୁହ ଉଦାସ । ଅସ ନ ନାଶ ମୋ ଆଶ । ୨ ।
ରସାରେ ତୁ ମୋ ଭରସା । ଭୂଷା ନା କାମେ ସୁଭୂଷା ।
ନିଶା ପୂରଅ ମନଶା । ରସା ସ୍ନେହରେ ସୁରସା । ୩ ।
ଦରହାସି ମୋ ହୃଦର । ତରଳ ଭୁଜ୍ଞ ମାତର ।
ଧର ଉରଜା ଜଧର । ହର ଏ ଦୁଃଖ ମୋହର । ୪ ।
ଏ ବେଦନା ଦେଖି ଏବେ । ଲବେ ଶତ୍ରୁ ନ ଟଳ୍‌ଟେବ ।
ଭବେ ଏହା ନ ସମ୍ଭବେ ଭାବେ ରଘୁନାଥ ଭାବେ । ୫ । ୫୬ ।

ଗଦ୍ୟ

ଏସମୟେ ହେ ଶମୟେ । ଉଦଣ୍ଡ କୁସୁମକାଣ୍ଡ ପ୍ରଚଣ୍ଡରେ ଗଣ୍ଡରେ କାଣ୍ଡରେ ଖଣ୍ଡଖଣ୍ଡ କରିବାରେ । ପୁଣ୍ଡରୀକ ବେଗରେ ରହ୍ମ ଆଗରେ । ପୁଣ୍ଡରୀକଭାବନ ପୁଣ୍ଡରୀକନୟନ ସମଦାଖଣ୍ଡଳଦର୍ପ-

ଖଣ୍ଡନ । କୁଣ୍ଡଳୀମଦଗଞ୍ଜନ ବ୍ରଜମଣ୍ଡଳମଣ୍ଡନ ଦୈତ୍ୟଦଣ୍ଡନ ମଦନରେ । କହିଲେ ବାଣୀ, କୁଞ୍ଜସଦନରେ । ୮୧ ।

ମାଳଶ୍ରୀ ।

ମଦନ କଦନ ଦେ ନା ବାଦରେ ମୋଦ ହୋ ନା ।
ସଦସ୍ମୃମନ୍ତ ତୁ ନୋହୁ କନ୍ଦର୍ପାନ୍ତ କୁହା ନା ।
ମଦଗଜଗତି ରାଧା ଆଜ ଦେବାରୁ ବାଧା ।
ପଦ ପଦେ ଚନ୍ତୁ ନାହିଁ ଭେଦ ନା ପଞ୍ଚବାଣେ ॥

ରାଗ ଭୈରବୀ । ଏକତାଳ ।

ମାର ଫୁଲଶର ନମାର । ସାର ପଣ ନ ସାର । ସାରସଗମନୀ ନବଗ ପରାଣରେ । ଧୀର ହଜାଇ ଅଥିର ହୋଇଛି ମୁହିଁ । ପଦ ।
ହର ସିନା ପର ଛୋଡ଼ର । ଚର ହାର ଚାପର । ୧ ।
ଭାବ ଗୁଡ଼ି ନୁହ ଅଭାବ । ଭାବ ତେଜ ପ୍ରଭାବ । ୨ ।
ଭଣି କବିଚନ୍ଦ୍ର ନ ଭଣି । ବାନୀ ଚନ୍ଦ୍ର ସୁବାଣି । ୩ । ୫୨ ।

ପୃଥ୍ୱୀ ବୃତ୍ତ ।

ହରାର ତୁ ହରାନରେ ଶର ଶରାସନ ଯୋଖ ନା ।
ପରାଭବ ଧରାପରେ ନ ଦଅ ମୋପରା ଦୁଃଖିରେ ।
ଖରାଂଶୁ ତନୟାତଟେ ବର ସରାଗ ହେଳାମିସା ।
ମରାଳଗମନା ଅନାଉଣି ପରାଣରେ ଭେଦଇ । ୬୨ ।

ରାଗ ସୁରଟ । ଏକତାଳ ।

ବାଦକରି ମଦନ ତରଜନା । ଫଣପୃ ପରିହର ମୃ ହରି ହର ତୋ ପର । ପଞ୍ଚସୁମନଶର ବରଜ ନା । ପଦ ।
ମମ ହୃଦ ହାର । ମାର ସେ କ ବିଷଧର । ମଳୟଜ ରଜ ତୁ ଭସ୍ମ ମଣନା । ଅତିଶୟ ମଞ୍ଜୁଳ ନବକୁବଳୟଦଳ । କଣ୍ଠେ ନୁହେ ଗରଳ ଗରଜ ନା । ୨ ।

ରାଧା-ନୟନ-ବାଣେ ତନୁ ଜରଜର । ଦୁଃସହ ଧୃତି ରତି-ପତି ହର ନା । ସୁବୁଧି ଗୁଣନିଧି ମୂର୍ଚ୍ଛିତ ଜନ ବଧି ଦୁଷ୍ଟକୁବୁଧି ପିଛି ଅରଜ ନା । ୪ ।

କହେ ଦ୍ୱିଜ ପଦ୍ମନାଭ ଶୁଣ ମାଧବ । ଆଣିବ ରସମୟୀ ସୁଖସଦନା । ବିହରିତ ସଙ୍ଗର ଦର୍ପକ ଦର ଦୂର, କର ସବିନୟ ଠିର ସରଜ ନା । ୪ । ୫୮ ।

ଆର୍ଯ୍ୟା ବୃତ୍ତ ।

ବିରହେ ରହି ହରି ବିରହେ ।

ସୁମନେ ଭୃଙ୍ଗ ଦେଖି ଅତିଶୟ ବିମନେ ।

ବାର୍ତ୍ତା କହି ଚଳିବାରେ ।

ବନମାଳିକ କହିଲେ ବନମାଳୀ । ୬୮ ।

ରାଗ ଯଦୁକୁଳକାମ୍ବୋଜ । ତାଳ ଝିମ୍ପୁଟା ।

ଏହି ବାର୍ତ୍ତାନକର । କହିବୁ ମଧୁକର । ଏହିକି ମୋର ନିକର । ଅହିତ ହିତବାଣୀ । ସେହି ନ ଜାଣି ପୁଣି । ରହିତ କ୍ରୋଧଭରେ । ଯହିଁ ରମଣୀମଣି । ୧ ।

ହିନକରେ ସୁଦେହୀ । ତା ନଖେ ଲେଖି ମହୀ । ଆନନ ମୋ ସୁଖିଗଲି ସେ ନବ ବାଳା ଗୃହିଁ । ମାନସକୁ ମନାଇ ମାନ କରିବା ଧିକ । ମାନବଶ ବୋଇଲି । ୨ ।

ସଞ୍ଜବେଳରୁ ଆସି । କୁଞ୍ଜସଦନେ ବସି । କୁଞ୍ଜରଗମନା ବାଳା କୁଞ୍ଜ ପ୍ରକାଶ ପାଇ । ରଞ୍ଜନ କରୁଥାଇ । ଅଞ୍ଜନକେଶୀ ସୁଖ । ଭଞ୍ଜନ ଏବେ କଲି । ୩ ।

କହଇ ରଘୁନାଥ । ଜୟ ରଜନୀନାଥ । ଅବିରତ ଶ୍ରୀହରି ଧ୍ୟାଇ । ଭୂବିରେ ଯେତେ ଜନ । ଭଜ ନନ୍ଦନନ୍ଦନ । ଅବିଳମ୍ବେ ହେବ ପାର । ଆନ ଏଥେ ନ ରହେନ । ୪ । ୫୬ ।

## ଆର୍ଯ୍ୟା ।

ଅଥ ରଜନୀନାଥ ବଦନା ନାମନ୍ତ ରତ୍ତି ରଞ୍ଜଲେ ସୁଖ ସଦନା ।
ଭୃଙ୍ଗର ଗୁଞ୍ଜନ ସହ୍ନ । ଚମ୍ପକମୂଳେ ବସିଲେ ମୁଖ ଶୁଖାଇ । ୬୯ ।
କୁଞ୍ଜରଗମନା ସମ୍ମୁଖେ । କୁଞ୍ଜରେ ରହ୍ନ ନାଗରେନ୍ଦ୍ର ଅନ୍ତ ସମ୍ମୁଖେ ।
ଲଳିତା ଅନ୍ତମନ୍ତ ବରସେ । କହ୍ନ ସରଗଣକ ବଶାଖିକା ପାଶେ । ୭୦ ।

ରାଗ ହୁଶେନ । ଆଡ଼ତାଳ ।

ଆସି ଯାଇଛୁ ସିନା କରମକୁ ଗୋ । ରାଧା ରୁଷିବା ଥାଇ କ ଶ୍ୟାମକୁ ଗୋ । ବ୍ରଜଯାକ ସର୍ବେ ତାର । ସେ ବୃଷଭାନୁ କୁମାର । ଏଥିରୁ ନ ଜାଣେ ତାରତମକୁ ଗୋ । ୧ ।

କେ ହେଲେ ବଳେକର କା । ସଜନ ଦୁହେଁ ଦୁହିଁକ । ଭ୍ରମରେ କରିବାର ଚରମକୁ ଗୋ । ୨ ।

ଅପରାଧ କେତେ ଥର । କ୍ଷମାକରି ନାହିଁ ତାର । ଯାଉ ବୋଲି ପଛ କରି ତମକୁ ଗୋ । ୩ ।

ଆଳୀକ ଦେଖିଲେ ଯାର । ପରିଗୃହୀ ପରିଚର ହୋଏ ସେ ତେଜ ଲାଜ ସରମକୁ ଗୋ । ୪ ।

ଗୋପାଳକୃଷ୍ଣ ଭଣିତ । ଜାଣି ସଙ୍ଗିନୀ ଇଙ୍ଗିତ । କଲ ହୋଷ ଭେଦରି ମରମକୁ ଗୋ । ୫ ।

## ଲଳିତାଙ୍କୁ ପ୍ରତି ବିଶାଖା ।

ପଦ୍ୟ—ଲଳିତେ ଶୁଣ ମୋ ବାଣୀ । ଚଳିବାର ନୁହେ କ ସେ ଆସିବ ବୋଲି ଯେ ରାଧେ ନିଶା ରହିଲେ କା ପୁରେ । ୭୧ ।

ରାଗ ରେଗୁପ୍ତ । ଆଡ଼ତାଳ ।

ରୁଷି ପାରିଲେ ସେ ଯାଉଛେ ରୁଷି ଗୋ । ତୋଷିବେ ବୋଲି ସେ ଚପି ପ୍ରତିଆଶେ । ବସି ସାରିଲ ଚ୍ଚେ ନିଶି ଗୋ । ପଦ ।

ସଜ କରାଇ ଯେ କେଳିଗୃହକୁ । ସଜଡ଼ାଇ ସୁବେଶରେ ଦେହକୁ । ସଜପଦ୍ମମୁଖୀ ସଜନୀ ନ ରଖି, ହଞ୍ଚୁରୁ ଯେ ଥିଲା ଆସି ଗୋ । ୧ ।

ସୁମନସ ଲାଗି ହେବେ ସେ ବୋଲି । ସୁମନରେ ଗୁନ୍ଥି ଥିଲା ଛଇଳୀ । ପ୍ରେମରସେ ପୂରି, କାମନା ସେ କରି କାମଣରେ ହେଲା ହାସି ଗୋ । ୨ ।

କାନନକୁ ସଖୀସଙ୍ଗେ ଯେ ଯାଇ । ଇନ ସବିଧିରେ ନିତ ପୂଜଇ । ସେ ନ ଆସିବାରେ ହିନ ବଞ୍ଚିବାରେ । ଆନ ସ୍ନେହିଭୁଲେ ରସି ଗୋ । ୩ ।

ପରଜନ ଗୁରୁଜନ ନକରି । ତରଜନକୁ ସହି ଯେ ନକରି । ବରତରେ ମିତ । ଅରଜିତ ଚିତ୍ତ । ହରତ ହୋଇ ଯେ କ୍ଳେଶୀ ଗୋ ।୪।

ସବିଧିରେ ସହି କହୁ ଏ ବାଣୀ । କବିସୁଧାଂଶୁ ରଘୁନାଥ ଭଣି । ଭାବ ଏହା କହି ସୁବିବେକୀ ହୋଇ । ନ ବିଗୃହି ହେଲେ ଦୋଷୀ ଗୋ । ୫ । ୬୧ ।

## ବିଶାଖାଙ୍କ ପ୍ରତି ଲଳିତା ।

### ଆର୍ଯ୍ୟା ।

ଯାରେ ଭୁଞ୍ଜି ସମଜାରେ । ଯାରେ ଧରିତ ସହି ଦୁଃଖ ମଜ୍ଜାରେ ।
ବାରଣଗତି କି ହିବାରି । ବାରଣ କରୁ କରଭୋରୁ ମାନକୁ । ୬୨ ।

## ଲଳିତାଙ୍କୁ ବିଶାଖା ।

### ଦ୍ରୁତବିଳମ୍ବିତ ବୃତ୍ତ ।

କରିଛୁ ଯେ ଅପରାଧ 'କୃପାବ୍ଧିରେ (ବ୍ଧି) ।
ଧରି କରେ ପଦ ତାର କହୁ ସ୍ୱୟଂ ।

ଝରକରେ ଯନ୍ଦ ନୋହିବ ବୃଦ୍ଧି ତା ।
ଅରଅରେ କହିବ ଟଗୋ ବୁଝାଇ କେ । ୭୩ ।
ରାଗ କାମ୍ବୋଜ । ତାଳଆଢ ।
ସମଯାଜ ନଗୋ ସେ ଶ୍ୟାମ ଯାଜ୍ ଗୋ । ପଦ ।

ରାଧା ଗୁମାନ ଦେଖି ହରି ହେବାରୁ ଦୁଃଖୀ । ସଖୀଙ୍କ କେଉଁ ସଖୀ କହିବାରୁ । କୃଷ୍ଣ କରତବ୍ୟରୀତ । ଭାବି କହେ ସେ ଦୂତୀ । ୧ ।

ହରି କରିବା ଦୋଷ । ମୋହରି ବୋଲି ବାସ ଶେଷ ପ୍ରସାଦ ମାଗିବାର ବେଳେ । ଭିଜିଲା ଅଶ୍ରୁଜଳେ । ପଡ଼ି ଚରଣ ତଳେ । ୨ ।

ଆସିବ ବୋଲି ରାତ୍ର । ଭ୍ରଷ୍ଟି ଇତରେ ମାତ୍ର । ବାସି ଯେ କଲାତାର ଚେତେ ବେଶ । ଏହା ନକଲ ଉଚିତ । ଏଥି କ ହୋଏ ଚତ୍ର । ୩ ।

ହେବ ବୋଲି ସୁଭାଗୀ ରଜନୀଜାଗ କରି । ଧରାରେ ଛେଳୁଅଛୁ ପେହ୍ଣ ଶ୍ବାସ । ମାନସ ତୋଷିବାକୁ । କସ କହିବ ତାକୁ । ୩ ।

ଶିଖଣ୍ଡମଯୂ ଚୂଳ । ଯାକ ଅଳତା ବୋଳ । ଅଂରେ କ୍ଷତ କେହ୍ନ ହେଲା ବୋଲି । ପୁଛିବ ଯେବେ ପନ୍ଥା । କହାଇବ କ କଥା । ୫ ।

ଭାଷିଲେ ଜଳନ୍ତର । ଅବନୀ-ପୁରନ୍ଦର । ସଖୀ ବୋଇଲେ ଏହା ସତ ସିନା । ଦୂତ ଏଥି ମଦନ । ହୋଇ ଦୁହିଙ୍କ ମନ । ୬ । ୭୨ ।

ଗଦ୍ୟ—କଥା ଏପରି ପରିଣତବୟାଧରା ଧରଣୀଶୋଭିନୀ ମତ୍ତ ଅନ୍ତଲେଭିନୀ, ଲଳିତା ଲଜ୍ଜାତାଗମନେ । ବଲ୍ଲେକ ସୁମନେଷୁ ମୋହ ସୁମନେ । ବରହରେ ରହରେ । ସ୍ନେହରେ ତଳପରୁ ଉଠି ବେଗରେ । କହିଲେ ପହିଲେ ସରାଗରେ । ୧୨ ।

ଶିଶ ପଦ୍ୟ—ସଞ୍ଚାର କହଯାଇ ପଞ୍ଚାସ୍ୟ-ଉଦରାକ ବଞ୍ଚାଇ ଦଅ ନା ତୁ ସଖି ଯଶକୁ । ମନ୍ଦାର ଅଧରାକୁ ଫନ୍ଦା ମୁଁ କରିଥିଲି । କୁନ୍ଦ ଉର ଦଶନା ତ ବଦନ ବନ୍ଧିଲି । କଞ୍ଜାତନୟନାକୁ ରଞ୍ଜାଇ କହି ପଦେ ସଞ୍ଚାତ କରୁ କେଳିକୁଞ୍ଜ ସଦନେ । କାନ୍ତାର ପରସରେ

ସନ୍ତାପ ଲୁଟିବରେ ସନ୍ତାନ ସତ ସେ ତ କାନ୍ତ-ଚସରେ । ଜାଣୁ ମଣିକ ଭାଷ ଯାଇ ଭାଷ ବେଟେଗ । ଆଣୁ ମନ୍ତ କ ଟାର । ଆଜ ଅନଙ୍ଗ-ରଙ୍ଗେ । ହାଣ ଘାନ୍ତି ନ ଥାଉ ଶଙ୍କେ । ପ୍ରାଣ ମୋ ଟେକୁ ସତେ ପଙ୍କଜାକ୍ଷୀ । ୧ ।

ରାଗ ଆହାରି । ଚଉତାଳ ।

କହ ଗୋ । ଭୁଲି ଯାଅ ଗୋ । ସଖୀ କ ଥରେ । ପଦ ।

କହ ସବୁଗରେ । ରହ ତା ଆଗରେ ।
କୁହନା ନ କର ମୋହ ବଧୂପୁରେ । ୧ ।
ମନ୍ଦପାଳରୁତ । ମନ୍ଦମନ୍ଦରୁତ ଦ୍ୱନ୍ଦ କରୁଚି ଏବେ ।
ସୁନ୍ଦରୀ ବରହେତ । ୨ ।
ଶୁଣି ବଚନ ମୋର । ଜାଣି ଦୁଃଖିନୀକର ।
ଏଣୀସୁନୟନାର । ପାଣିଧର ସତ୍ୱର । ୩ ।
କହେ ରଘୁନାଥ । କବି ନିଶାନାଥ ।
ମୋହନ ସଖୀକି କହିବା ଚରିତ । ୬୩ ।

ଆର୍ଯ୍ୟା ।

ଦୋଷ ନ ଗୁହ୍ନାଁ ବାଳା । ରୋଷରେ କରିଚ ମତ୍ତେ ହେଳା ।
କହ ଗୋ ଯାଇ କୃପାରେ । ମାନବନ୍ତି ମାନକୁ ବୋଧି ନ ପାରେ ।୭୪।

ରାଗ ଆଶାବରୀ । ଆଡ଼ତାଳ ।

ସହିଗୋ କହିବୁ ତୁ ଏହା । ସେହି ନ କଲେ କରୁଣା ।
କେହି ନାହିଁ ସାହା । ପଦ ।
ଆଶା କରି ଶଶି ନାଶ ଆଜଯାଏ ଅଛୁ ।
ନିଶାନାଥର ହୃଦରେ ବସା କରିଚି । ୧ ।
ଶଶୀ କେମନ୍ତ ସୁନ୍ଦର ସମସ୍ତେ ତ ଜାଣ ।
ନଶିକ ଆସି ରହୁଚି ନ ଥିଲେ ହେଁ ଗୁଣ । ୨ ।

ଶୁତକ ସାନ ଚାବାଙ୍କୁ । ଜଳଦ ତ ଉପରେ ।
ଚାତକୀ ଦେଖି ସ୍ୱାର୍ଥକ । ପାବନ ନ କରେ । ୩ ।
ଅଳିକ ନଳିନ ରସେ । ଅନୁଗତ ମାନ ।
ବଳିଦେଶୀଭ୍ରମା ନ ଦେଜ୍ । କଳାରୂପ ସେନ । ୪ ।
କବି ନିଶାନାଥ ରଘୁନାଥ ଏହା ଭଣି ।
ଈଶ୍ୱରଙ୍କେ ଦୂତୀ ବୋଲେ ଅତି ମୃଦୁବାଣୀ । ୫ । ୬୪ ।

## ଶ୍ରୀରାଧାଙ୍କ ପ୍ରତି ଦୂତୀ ।

### ପୃଥ୍ୱୀ ବୃତ୍ତ ।

କଳାପ ସୁକରଣ୍ଠ ହେ ଘନବଳାଶ ରନ୍ଧ୍ରଦୃଷ୍ଟି ।
କଳାବତି କଳ୍ପ ପରି ହରଷରେ କୃପା ଶତ୍ତରେ ।
ବିଳାସବତି ବାଳିକା ଭ୍ରମରମାଳିକା କେଶୀ କି ।
ବଳାଇ କହିବ କଥା ନ କରୁବା କୁଟଣେ ସେ କରୁ । ୬୫ ।

### ସ୍ୱର ଖମାଚ । ଚଉତାଳ ।

ଜଣାଇବି ପିନା ବାରେ ବାରେ ରସ-ବତି କି ।
ଶୁଣ ନୋହିଲେ ମୋର କି ଉପାୟ ଅଛି ଏଣି କି । ପଦ ।
ଶିଖାଇ ପ୍ରଣୟ ସ୍ୱୀତ । ଦେଖାଇ ଅନେକ ମାତ ।
ଦେଖା ଦେଖି ହେଲ ପରି ଜଗତ ସ୍ତନବତି କି । ୧ ।
ଝୁଲାଇ ମନ ମନରେ । ଛଳାଇ ତାଙ୍କୁ ପ୍ରେମରେ ।
ହେଲା ତେଜ ବାଳା ବଳାଇଲ ପରି ମତିକ । ୨ ।
ତୋ ଲାଗି ମୁରଲୀଧର । ହେଲ ଏଥର ଅଥିର ।
ଭୁଲ ଭୁଲ କରିବାର ହୋଉ ବୋଲି ଏତିକ । ୩ ।
ଦ୍ୱିଜ ରଘୁନାଥ ଭାଷି । ଦୂତୀ କଣୋଟଙ୍କୁ ତୋଷି ଗଜଗନ୍ତି
ନିକଟକୁ କଲେ ବେଗେ ଗତିକ । ୪ । ୬୬ ।

ମାଳସୀ ।

କହିଲ କହିକ ବୋଲ କାତରାତ୍ୟନ୍ତ ଜାଣି ।
କହିବ ମୁଁ କେଉଁ ଲାଜେ କାମିନୀ କୋପ ଗୃହିଁ ।
ରହିଚ ତ ଅନ୍ତଦୁଃଖେ ରାନ୍ତି ହେବା ନାରାଶେ ।
ସହି କରବ କ ଯେହ୍ନ ଜାଣିତ ଚୌର୍ଯ୍ୟଶାନ୍ତି । ୭୭ ।

ରାଗ ଧନାଶ୍ରୀ । ଏକତାଳି ।

ଜଟି କହିବାକୁ ସତେ କ ଅଛୁ ହେ ।
ସାକ୍ଷତେ ଯେ ମୋର ପଣ ଦେଖିଚ ହେ । ପଦ ।
ହଠ କରି ଅଛୁ ସେହି । ଅଳକ ଅନାଇ ନାହିଁ ।
ଅଠକ କଳା ସଖୀଙ୍କି ହୋଇଚ ହେ । ୧ ।
ପିକକୁ ମୁଁ ନ ଦେଖିବ । ବୋଲି ମନେ ମନେ ଭାବ ।
ନକଠ ରସାଳ ରସେ ଗୁଣ୍ଡିଛୁ ହେ । ୨ ।
କହିବ ବୋଇଲେ ତାକୁ । ମୁହିଁ ଅଛୁନ ଆମ୍ଭଙ୍କୁ ।
ଯହିଁ ତହିଁ ସାକ୍ଷୀ ସେ ରହିଚ ହେ । ୩ ।
କହେ ରସେ ରଘୁନାଥ । କବି କୁମୁଦିନୀ ନାଥ ।
ମୋହନ ବୋଇଲେ ଦୋଷ କରିଚ ଗୋ । ୪ । ୭୮ ।

## ପୁଣି ଶ୍ରୀକୃଷ୍ଣ ।

ମାଳସୀ ।

ସହି ନ କହିବୁ ଯେବେ ଯାଇ ମୋ ଦୁଃଖ ଏବେ ।
ରହିବ କପଟ ସମାରମ୍ଭ ହସ୍ତେ ନ ପାଇ ।
ରହିବ ଯେବେ ନାରାଶେ ରାଜ୍ଞି ହେଲେ ପକାଇ ।
କହିବୁ ପ୍ରଣୟୁ ଭାବେ କାମିନୀ ଶତ୍ରୁ ଜାଣି । ୭୮ ।

ରାଗ ଆଶାବରୀ । ଆଡ଼ତାଳି ।

ନ କହିଲେ ପଦେ ନିପଟ ବିପଦେ ।
ନିକର ବୁଡ଼ାଇ ଦେବୁ ସିନା ଗୋ । ପଦ ।

ନ ଜାଣି ଜାଣିବା ଦୋଷ ହେଲେ ସେବା ନ କରିବ କ୍ଷମା ଯଦି ନବାନାରେ । ବୁଦ୍ଧିମଣି ହେଲେ ଊଣା ବୋଲିବେ ଲୋକେ କେତେ ଭାବନା ରେ । ୧ ।

ତୁ ତାର ସଜନୀ ମୁଁ ତୋର ଭଜନୀ ।
ତୋ ଶତ୍ରେ କରୁଣା କରୁ କି ନା ଗୋ ।
ସେ ତ ଦୟାବନ୍ତକ ଯେନ ବିନତି
ବୋଲିବୁ ଗତି ନାହିଁ ତୋ ବିନା ରେ । ୨ ।

କୁଞ୍ଜରେ ବସିଛି ତୋ ବାଟ ଚାହିଁଛି । ନ କହିଲେ ତୁ ମୋ ନିବେଦନା ରେ । କୁଞ୍ଜର ଗତି ହେଇ ମିଥ୍ୟା ମନୁ ହେ ଆଜି । ଯମୁନା ରେ ଝାସ ଦେବ ତୋ ନା,ରେ । ୩ ।

କହେ ରଘୁନାଥ କବି ନିଶାନାଥ ମୋହନ ନିଷ୍ଠୁର ଜଳ-ପନାରେ । କହିଲେ ସଜନୀ ଆଣିବ ରଜନୀ । କହି ବନପୁନାୟୁ କଳପନାରେ । ୬୭ ।

## ଦୂତୀ ।

ରଥୋଦ୍ଧତା ବୃତ୍ତ ।

କୁଞ୍ଜରେ ବସି ସୁକୁଞ୍ଜ ହାସ ହେ ।
ଖଞ୍ଜନାକ୍ଷୀକି ମନାଇ ଆଣିବି ।
ଗୁଞ୍ଜମାଳୀକି ତୋଷି ସୁରସରେ ।
ରଞ୍ଜନେ କହି କିଶୋର ପାଶରେ ।

## ମନ୍ଦାକ୍ରାନ୍ତା

ଶଯ୍ୟା ତ୍ୟଜ୍ୟା କର ତଳତଳପେ ଲୋଟୁଛନ୍ତି ନିରାଶେ ।
ରାଧା ବାଧା ହର ବନ୍ଧୁ ବଦନେ ନାହିଁ ତା ଭିନ୍ନ ବାଣୀ ।
ଶ୍ୟାମ ଶ୍ୟାମାଙ୍ଗ ଝଳ ନ ଦଶେ ଧୂସରେ ଧୂଳି ଲାଗି ।
ଧାମା କାମାତଶପୁ ନ ରଖେ ବାଣ ମାରି ପ୍ରତାପେ । ୮° ।

### ରାଗ ଆଶାବରୀ । ଆଡ଼ତାଳି ।

ନ କଲେ ତୁ ମୋର । ସେ ହେବେ କାହାର, ମା
ନ ବୋଲାଇବ କି ଯେ ଯାହାର ସେ ତାହାର ମା । ପଦ ।
ଫୁଲ ତୋଳି ଯାଇଥିଲି ଦେଖି ତା ଆତୁର ଆକୁଳରେ,
ଉଡ଼ି ଗଲା ସାହାସ ମୋହର ମା । ୧ ।
ତଳ ତଳପରେ ଗଡ଼ି ହେବାର ଅଥିର ।
ଦେଖି ଦେଖି କାହା ଚିତ୍ତ ନୋହିବ କାତର ମା । ୨ ।
ତୋ ଦୁଃଖ ଦେଖି ସେ ଛାଡ଼ି ନେଲେନି ଆହାର,
ବଳ ଥିଲେ ବଳେ ଆସି ଧରନ୍ତେ ପୟର ମା । ୩ ।
ଶର ମାର ମାର ସ୍ମର କଲାନି ଅଥିର ।
କହେ ରଘୁନାଥ କୋପ ଏଥର ସମ୍ଭର ମା । ୪ । ୭° ।

### ମାଳିନୀ

ରମଣି ମୃଗଲୀପାଣି ଦୁଃଖ ତୁ ଜାଣି ଜାଣି ।
ନ କହୁ ସରସ ବାଣୀ କାହିଁ ପାଇଁ ସୁବାଣି ।
କି କହିବ କହ ଏଣୀ-ଲୋଚନା ତାପ ଶ୍ରେଣୀ ।
ଶୁଣି ତୁ ବରଜୁ ପାଣି ଲୋଚନୁ ଗୁରୁଶ୍ରେଣୀ । ୮୧ ।

ରାଗ ଆଶାବରୀ । ଆଡ଼ତାଳ ।

କି କହିବି ସେ ଶ୍ୟାମକୁ । ପ୍ରାଣ ସଜନି ଯାଉଛି ଗୋ । ପଦ ।
ଦେଇ ଆସିଛି ଅବଧି । ଘଡ଼ିକ ଲବଣ୍ୟନିଧି ଗୋ । ବଳିତ ଗଲାନି ଯାମକୁ । ୧ ।

ଛା ଦୁଃଖ ଜାକ ଯା ଶୁଣି । ତୁନି ହେଲୁ ଗୁଣମଣି ଗୋ ଆସିଛି ସିନା କରମକୁ । ୨ ।

କରି କେତେ ପ୍ରତି ଆଶା । ତୋଳିଛି ଯୋଷା ଶିରଭୂଷା ଗୋ । ପଠିଆଇ ଥିଲେ ଗ୍ରୀଷ୍ମକୁ । ଏଣୁ ସେ କେଶର କୁଞ୍ଜେ । ବସି କଣ-ଲପୃ ଶେଯେ । ଧ୍ୟାନ କରେ ତୋ ଆଗମକୁ । ଆଳ ଚେଲାଞ୍ଚଳ ଧରି । ବୋଇଲେ ନବ କିଶୋରୀ ଲଳିତ ହୋଇଛି ବାମକୁ । ୪ ।

ଗୋପାଳ କୃଷ୍ଣ ଭାଷିତ । ନ ଛାଡ଼ ଆଳୀ ପଣନ୍ତ ।
ବୋଇଲେ ହେଲି ବଶମକୁ । ୫ । ୭୧ ।

## ଶ୍ରୀରାଧାଙ୍କୁ ଦୂତୀ ।

ମନ୍ଦାକ୍ରାନ୍ତା ।

ମନ୍ଦେ ମନ୍ଦେ ପବନ ବହୁଛି କୁନ୍ଦମାଳାର ଗନ୍ଧେ ।
ବୃନ୍ଦେ ବୃନ୍ଦେ ପଞ୍ଜନ ଶୁଣ ମାକନ୍ଦ ବୃକ୍ଷେ ମିଳନ୍ଦେ ।
ଦ୍ୱନ୍ଦେ ଦ୍ୱନ୍ଦେ ଭ୍ରମି ଭ୍ରମି ବସେ ତୋଷେ ହୋଇ ମରନ୍ଦେ ।
ସନ୍ଦେହେ ତୁ ନ ରସି ରସରେ ବନ୍ଧ କେଳି ପ୍ରବନ୍ଧେ । ୭୨ ।

ରାଗ ରାମକେରୀ । ଆଡ଼ତାଳ ।

ଆଜୁ ଟିକାକୁ ସେ । କାହିଁକି ଦୁଃଖ ତୃଷ୍ଣା ।
ଶ୍ୟାମ ମୋର ଜୀବବନ୍ଧୁ ବୋଲି ପିବ ଏହି ଶ୍ରୀ ମୁଖରୁ ଶୁଣା । ପଦ ।
ସରଦାର ମଧୁ ଫରମାସିଲାନି ନିକୁଞ୍ଜମନ୍ଦିର ମଣ୍ଡା ।
ଅନଙ୍ଗରଣ ରଙ୍ଗ ସ୍ଥଳ ଖଡ଼ବ ଶୃଙ୍ଗାରମଙ୍ଗଳ ଝଣ୍ଡା । ୧ ।

ସମରସମସ୍ତ ସତ୍ୱର ସମସ୍ତ ସଦ୍ରୂପ ହୋଇବାକୁ ।
ନଜ 'ଜପ୍ସ ହେତୁ କେତୁ କଶବ୍ରୁ ତୁ କୋମଳ ଶ୍ୟାମଲତାକୁ । ୨ ।
ମଳିବା କ୍ଷଣି ତୋ ପୀୟୂଷ ଅଧର ମୁଖ ସୁବାସ-ରଞ୍ଜକ ।
ମୁରଲୀ ମୋହନ ଖ୍ୱରଳ ଚୁମ୍ବନ ମନରୁ ପାସୋର ଯିବ । ୩ ।
ତବନ୍ତରେ ତୁ ମୋଠାରେ କରୁଣା-ରସ ସିଞ୍ଚ ବା ନ ସିଞ୍ଚ ।
ମିଳିବ ତୋ ପଦ ତଳକୁ ଶିଖଣ୍ଡମସ୍ତ ଚୂଳାଞ୍ଚଳ ଲଞ୍ଚ । ୪ ।
ଗଜରବରନା ଗଜରବମନା ହୋଇ ମନ କଲେ ତାରେ ।
ହବାର ବଣିକ ମିସାଇବ ହରମଣି କନକଲତାରେ । ୫ ।
ମଜ୍ଜ ସଖୀଗିରେ କଶୋଖ ସଧୀରେ ବୋଇଲେ ଶ୍ଳେଷେ ଯା ମଜ୍ଜା ।
ଭଣିଲେ ଶ୍ରୀ ଜଗନ୍ନାଥ ରପୂଣ ଗଜପତିମହାରାଜା । ୬ । ୭୨ ।

## ଶ୍ରୀରାଧାଙ୍କ ଉକ୍ତି ।

### ଦ୍ରୁତ ବିଲମ୍ବିତ ବୃତ୍ତ ।

ମଦନ ମୋହନ ଗୋ କୁଳଚନ୍ଦ୍ରମା ।
ବଦନ ପଙ୍କଜ ଚୁମ୍ବି ସବାରରେ ।
ମଦନ ଭାବ ବସେ ନତ ଥୋଇଲ ।
କଦନ ପାଉଛ ଜାଣ ବନାଖିକେ । ୮୩ ।

ରାଗ ଯଦୁକୁଳ କାମ୍ବୋଜ । ତାଳ ଆଦ ।

ଚନ୍ଦ୍ରଲେ ଆଉ କେ ଦେବ ନନ୍ଦସୁତଙ୍କୁ ସଖି ଗୋ । କାନ୍ତରେ
ମୁଁ ଦୋଷୀ ହେଲ ସଙ୍ଗିନ ଏବେ କ ବୁଧି । ୧ ।
ପ୍ରାତେ ମୋ ପାଶେ ତାଙ୍କୁ ଗୃହୁଁ । ଭାଳିଲେ ନିରାଶ ହୋଇ ।
ହେଲେଁ ଗୋ କେତେ କାତର । ନ ଗୃହୁଁ ଯେ ମଉନେ ରହିଲ । ୨ ।
ଭାଳିଲେ ଯେତେ ଯେତେ । ବାଣୀ ଟେସିଲ ତାହା ନ ଶୁଣି ।
ମଣ୍ଡି ଗୃହୁଁ ବସିଲ ମୁଁ । ଜାଣି ଜାଣି ତେଜିଲ ତେତେ ପ୍ରୀତି । ୩ ।

ଜାଣିଲେ ଯହୁଁ ମୋର ବେଷ । ହେଲେ ସେ କେଡ଼େ ନିରସ ।
ଗଲେ ଗୋ ଶ୍ୱାସ ପକାଇ । ତେବେ ହେଲେ ରଖିଲି ନାହିଁ ଆଣି । ୪ ।
କିଶୋର ତହୁଁ ଏ ଭାଷ । ଶୁଣି ଦୂତୀ ହୋଇ ତୋଷ ।
ଭେଟାଇଲା ବଂଶୀପାଣି । ରଘୁନାଥ କହିଲା ତାହା ଗୁଣି । ୫ । ୭୩

## ମାଳଶ୍ରୀ ।

ବିନୟକୁ ଯେଉଁବାରେ ଭାଷିଲେ ସେ ସରାଗେ ।
ନ ଶୁଣି ଶ୍ରବଣମାର୍ଗେ ପାଣି ଦେଲି ମୁଁ ବେଗେ ।
ପରୁଷବଚନ ବାଗେ ଭେଦିଲି କଣ୍ଠତାଗେ ।
ହରି ହରି ମୁଁ କି ଯୋଗେ ବଞ୍ଚିବି ରସଭାଗେ ।

## ରାଗ ଆଶାବରୀ । ଆଡ଼ତାଳି ।

କି ଅଭିମାନ, କଲି ପ୍ରାଣଧନ ଗୋ ।
କର ଧରି କହୁ କହୁ ନ କହି ବଚନ ଗୋ । ପଦ ।
ଯେ ପରାଣରୁ ଅଧିକ ତାହାକୁଁ ଅଧୀରେ ।
ପରି ପରି କରି ଦେଲି ଦାରୁଣ ବୁଦ୍ଧିରେ ଗୋ । ୧
ସମ୍ମୁଖ ପଟଳୀ ସେବା ନିତି ଯାହାଲାଗି ।
ତାକୁ ରୁଷିବା କଥାକୁ ନ ପାରିଲି ଜଗି ଯେ । ୨ ।
ଯେ ଜଗତ ମୋହିବାରେ ମୁରଲୀ ବଜାଇ ।
ତାହାକୁ ଦେଲି ମଦନେ ବିବେକ ହଜାଇ ଗୋ । ୩ ।
ମୁଧା କ୍ରୋଧାବେଶେ ମୋର ମାନସ ମଜାଇ ।
ଚିନ୍ତାହରା ଚିନ୍ତାମଣି କରରୁ ହଜାଇ ଗୋ । ୪ ।
ଦ୍ୱିଜ ରଘୁନାଥ ବୋଲେ ରାଧା ଗିରେ ତୋଷେ ।
ସଖୀ ଆଣି ଭେଟାଇଲେ ଘନଶ୍ୟାମ ରୂପେ ଯେ । ୫ । ୭୪ ।

ରାଗ ପୁନ୍ନାଗ । ଆଡ଼ତାଳ ।

ସଖିରେ ମୁଁ କି କୁହୁଡ଼ିଲ । ଦାରୁଣ ମାନକୁ ଭଜ ଶ୍ୟାମ ବନ୍ଧୁକୁ ଘୁଞ୍ଚାଇଲ । ପଦ ।

ବସନ ପ୍ରସାର ମୋତେ, ବିନୟ ଭାଷିଲେ ଯେତେ, ଚରଣ ତଳେ ପଡ଼ନ୍ତେ, ନ ଚାହିଁ ମୁଖ ମୋଡ଼ିଲ । ୧ ।

ଅନାଦର ଦେଖି ମୋର, ନୟନୁ ବୁହାଇ ନୀର, ଗଲେ ନାଗରବର, ଯାଉଁ ପଥ ନ ଆଉଡ଼ିଲ । ୨ ।

ସଜନୀଙ୍କ ହିତବାଣୀ ଅହିତ ପରାଏ ମଣି, ପରିହରି ବେଣୁ-ପାଣି, ଶୋକଜଳଧିରେ, ବୁଡ଼ିଲ । ୩ ।

ଗାୟକ ରଚନ ମତେ, ପ୍ରବୋଧି କହିଲ ଯେତେ, ବିଷପରି ମଣି ଚିତ୍ତେ, କରୁ ସୁଧାକୁ ଏଡ଼ିଲ । ୪ । ୭୫ ।

## ଦୂତୀ ଶ୍ରୀରାଧାଙ୍କୁ ପ୍ରତି

ମାଳିନୀ ।

ବିରସ ପରୁଷ ବାଣୀ ଭାଷିଲୁ ଚାହିଁ ଚାହିଁ ।
ବିନୟ ଶୁଣିଲୁ ନାହିଁ ପାଣି କର୍ଣ୍ଣେ ନ ଦେଇ ।
ପୁଣି କହୁ ତୁ ସରାଗେ ତାଙ୍କୁ ଯା ଆଣ ବେଗେ ।
ମଣୁଚ ତନୁ ନ ଥାଇ ଧନ୍ୟ କନ୍ଦର୍ପ ଧନ୍ୟ ॥

ରାଗ ହୁସେନି । ଆଡ଼ତାଳି ।

ପରପରି କରି ଏବେ ପ୍ରାଣସଙ୍ଗିନି ।
ପରିହରି ହରି କି ତୁ ଲୋଡ଼ୁ କି ଘେନି । ୧ ।
ଆସି ସେ ଯେତେ ଯେତେ ଭାଷିଲେ ବାଣୀ
ଠେଲିଲୁ ଅପରାଧ ଘୋଷି ନ ଶୁଣି । ୨ ।

ଭାଷ ନ କହ୍ନ ଯହ୍ନ ତୋଷକୁ ତେଜ ।
ରୋଷ ବହ୍ନିଲୁ ଏକା ଦୋଷ ନ ବୁଝି । ୩ ।
କହ୍ନି ଏପରି ମୋହ୍ନି ଶ୍ରୀକିଶୋରଙ୍କି ।
ନେଇ ଭେଟାଇଲେ ଦୂତୀ ବଂଶୀଧାରଙ୍କି । ୪ ।
ହରଷେ ରାଧାମାଧବ ରୂପ ଧ୍ୟାଇ ।
ଏ ରସରେ ଦ୍ୱିଜ ରଘୁନାଥ କହଇ । ୫ ।

## ପୁଣି ସଖୀ ।

ମନ୍ଦାକ୍ରାନ୍ତା ।

ରାମା କାହ୍ନା ବଶରୁ ରସରେ ଯାମିନୀ ଆସବେ ସେ ।
ଯୋଷା ବେଶାଦ୍ଧ ସାଜନ୍ତୁ କୁସୁମଶରେ ସାଦରେ ମୋଦରେ ଥା ।
ବାଳା ଲୀଳା ପ୍ରକଟି ରସରେ ଶତ୍ରୁରେ ହେବୁ ଥାପି ।
କାନ୍ତା ଚିନ୍ତା ଉର ପରିହରେ ସ୍ୱାନ୍ତରେ ଦୁଃଖୀ ହୋ ନା । ୮ ।

ରାଗ ରାମକେରୀ । ଆଡ଼ତାଳ ।

ସଜ ହୋଇଥାରେ ଗଜରାଜଗତି ଆଜ । ·
ରଜନୀ ଆସିବେ ସଜ ନୀଳୋତ୍ପଳଶ୍ୟାମ ବ୍ରଜଯୁବରାଜ । ପଦ ।
ସୁନା ପ୍ରତିମାରେ ମିନାଚିର କଳାଝୁନା ଶାଢ଼ୀ ଯତ୍ନେ ପିନ୍ଧ ।
ବଳାପଦ୍ମମଣି ନୀଳକୁନ୍ତଳାରେ କଳାପ କମର ବାନ୍ଧ । ୧ ।
ପୁଣ୍ଡରୀକବରଯୁଗେ ଇନ୍ଦୀବରଯୁଗଳ ଚଳାଇବାକୁ ।
ମୃଦ୍ଧମଲ୍ଲଞ୍ଜନ ଚାପିଟେଞ୍ଜ କନକମଞ୍ଜରୀ ମଳାଇବାକୁ । ୨ ।
କୁଞ୍ଜଳତ୍ପ ଝଷଧ୍ୱଜକେଳିରସ ଭୁଞ୍ଜାଇ ଭୁଞ୍ଜିବୁ ପରା ।
କଞ୍ଜାପୁଟାକ୍ଷିରେ ଖଞ୍ଜାଇ ଲଳାମ ଉପରେ ପୁନ୍ନାଗ ଝରା । ୩ ।
ମସାରମଣୀ ହେମସାରସମୂହ ମିଶ୍ରିବାର ବୁଝିବାକୁ ।
ବରତୂଳ ପୟୋଧର ଧରେ ରତ୍ନ ବରତୁଲେ ଯୁଝିବାକୁ । ୪ । ୭୭ ।

ଗଦ୍ୟ—ଯୋଖି ଯୋଖି ଲେଖି ଲେଖି ମାନେବାରେ ବଶିଖ ବଶିଖ ମଦନ ଶିଖି ଶିଖଣ୍ଡମଣ୍ଡନ ଲମ୍ଭି କଦନ ସଙ୍ଗୀବଚନେ ରଖି ମନ ବଲ୍ଲଭି ବଦନ ଦେଖିବାରେ। ସ୍ମରି ହୋଇବାରେ ଅଖିଳରକ୍ଷ ଯାମଳାର୍ଜ୍ଜୁନ ସାକ୍ଷୀ ବପକ୍ଷ। କୌସ୍ତୁଭମଣିବକ୍ଷା ଲକ୍ଷ ଲକ୍ଷ ଲକ୍ଷଣା-ବକ୍ଷ ମନ୍ଦାକ୍ଷଲକ୍ଷ ଅସଂଖ୍ୟ ସୌଖ୍ୟପ୍ରଦ ମୋକ୍ଷପ୍ରଦକୁ ମଞ୍ଜୁଳ ବଞ୍ଜୁ କୁଞ୍ଜପାଖରେ। ଦେଖି ଖରେ କଞ୍ଜଖଞ୍ଜନଗଞ୍ଜନରଞ୍ଜନେକ୍ଷଣୀକ। କହୁ ଦୂତୀ ଏହୁ ବାଣୀକ। ୧୩।

ମାଳମ।

ମଦନଶର ପରସେ ଘାରି ହୋଇ ନରସେ।
ସୁଷମ କୁସୁମବାସେ ହୋଇଲେ ଆସେ ପାଶେ।
ବୁଝିଅଛୁ ଯଦି ଦୋଷେ ବାନ୍ଧ ତୋ ବାହୁପାଶେ।
ଶରକରଜପରସେ ଚନ୍ଦ୍ରହାସପ୍ରକାଶେ।

ରାଗ ଲଳିତ। ଆଡ଼ତାଳି।

ଉଠ ନ କରମଠ ତୋ ଦରଶନକୁ।
ମୋହନ ଆସିଛନ୍ତି ପରରେ। ପଦ।
ପଲଙ୍କ ତଳରେ। ପ୍ରପଦ ପାଟରେ।
ଜଗ ହୋଇଛନ୍ତି ଧାରା ଧରାରେ। ୧।
ହେବୁ ବୋଲି ବେଶ। କରି କେତେ ଆଶ।
ଆଣିଛନ୍ତି ସୁମନସ ଝରାରେ। ୨।
ହୁଅ ଅପହୁଡ଼। ତଳପ ସଜାଡ଼।
ପ୍ରାଣନାଥ ମନୋରଥ ପୂରରେ। ୩।
ସଖୀ କରଧରି। ଖ୍ରୀନକଙ୍କଶୋରୀ।
ଚେତି ଉଭାହେଲେ କସୁନ୍ଧରାରେ। ୪।

ସଖୀ ଗଲେ କହ୍ତ । ସମସ୍ତଙ୍କୁ ଶୁଣି ।
ଗୋପାଳ କୃଷ୍ଣ କହଇ ଭାବରେ । ୫ । ୭୮ ।

ଅର୍ଯ୍ୟା ।

ବାଧି ଉଦୟେ ଚନ୍ଦ୍ରମଣି ଦ୍ରବନ୍ତି ବଚ ବାଧି ବରସନେ ସୁରମଣି ।
ଶୁଣି ପୁଣିତ ନ ଶୁଣୁ । କହିଲେ ଚହୁଁ ମଧୁଦ୍ୱାର ବନନ୍ତ । ୮୮ ।

## ଶ୍ରୀରାଧାଙ୍କୁ କୃଷ୍ଣ ।

ମନ୍ଦାକ୍ରାନ୍ତା ।

ଅଙ୍କେ ପଙ୍କେରୁହଦୃଶି ନ ବସୁ କାହିପାଇଁ କଣଙ୍କେ ।
ସଙ୍କେତେ ଯା ନରହିଲ ମୁହିଁ କାଳ କଂକେନ କୁଞ୍ଜେ ।
ରଙ୍ଗେ ପ୍ରାର୍ଥୀଜନକୁ ବିମୁଖେ ଶୁହୁଁ ବୃହୁଁ କ୍ଷଣେ ।
ଝିଙ୍କି ଭାରେ ମଦନ ଶରରେ ହୁଁକୁଟେ ମାରବାରେ । ୮୬ ।

ଦ୍ରୁତବିଲମ୍ବିତ ବୃତ୍ତ ।

ନବରସା ବନଚା ବନ ନେତ୍ରରୁ ।
ନବ ତମାଳ ବନେ ପିକ ଭାଷିତ ।
ନବରସାରଜନେ ତ କଣା ମତେ ।
ନବରସା ସୁରତେ ତୁ ଥରେ ମତେ ।

ରାଗ କଲ୍ୟାଣୀ । ତାଳ ଝୁଲୁଆ ।

ସଙ୍ଗିନ ତେସରଙ୍ଗିନ ଭୃକୁଭଙ୍ଗିନ ରୁଷ ନା ରେ । ହେମାଙ୍ଗିରେ ବରଭଙ୍ଗରେ । ସୁଅପାଙ୍ଗିରେ ତ୍ତ ଅନାରେ । ସଙ୍ଗେ ମୋହର ରଙ୍ଗ ବଢ଼ର । ଭଙ୍ଗିଦିଅ ଅନଙ୍ଗର ଦର ଉଙ୍ଗୀକ କର ଅଙ୍ଗୀକାର । ତୁଙ୍ଗସ୍ତନୀ ସୁମଙ୍ଗଳ କର । ୧ ।

ପଙ୍କଜ ମୂର୍ଦ୍ଧି । କଙ୍କର ମୂର୍ଦ୍ଧି । ଉଙ୍ଗୁ ନୟନ ଏରେ । ନିଶଙ୍କରେ ମୋ ଅଙ୍କରେ ପଲ୍ୟଙ୍କରେ ବସ ଧୀରେ । ଶଙ୍କ ନା ମୋ ରଙ୍କର ଧନ । କୁଙ୍କୁମବରମାଙ୍କ ରଚନ ହୁଂ କୁଚ ଟିଙ୍କେ ମାରେ କଙ୍କପଣ ଶଙ୍କରପର । ୭୯ ।

## ଶ୍ରୀରାଧାଙ୍କୁ ପ୍ରତି ସଖୀ

### ଶିଖରିଣୀ ବୃତ୍ତ ।

ବସାଇ ସଙ୍କେତେ କିଣି ମୁଖରୁ ମୁଁ ଆଣିବ ଟୋଲ ।
ନିଶାନ୍ତେ ଆସେ ସେ ସବୁ ଅପରାଧୀ ଲୁହଇ କ ।
ପ୍ରସାଦବା ଶାନ୍ତ ପ୍ରକଟି କହୁଚ ଘେନ ବ୍ଵନତ ।
ଉପର୍କୀଡ଼ା ଭାବେ ରମଣି ମଣିରେ ଦୋଷ ଧର ନା । ୯୦ ।

### ରାଗ ପୂର୍ବ । ଆଡ଼ତାଳ ।

ଏଥର ଶ୍ୟାମ ଦୋଷ କର କ୍ଷମାରେ । ପଦ । କର୍ଦ୍ଦୁ କର ଯୋଡ଼ି । ଯାଉଛନ୍ତି ପଡ଼ି । ଟୋଳ ହେଲେ ଶ୍ରୀମୁଖ ଚନ୍ଦ୍ରମା ରେ । ୧ ।

ନ ଘୋଡ଼ା ଶ୍ରବଣ । କହୁଛନ୍ତି ଶୁଣ ।
କୃପାନିଧି ବୃଷଭାନୁଜେମା ରେ । ୨ ।
ପଶୁପ୍ର ନଗର । ଶିଖି ପିବ ସର ।
ନ ରୁହିଁଲେ କେଶରମଧ୍ୟମା ରେ । ୩ ।
କେତେ ଥର ସବୁ ଯାଇ ନାହୁଁ ସହି ।
ଅପରାଧଯାକ ଘେନ ପ୍ରେମାରେ । ୪ ।
ଗୋପାଳ କୃଷ୍ଣ ସେ । ସଂସ୍ୟରେ ଭାଷେ ।
ଅର୍ଦ୍ଧ ହୋଇ ଗଲାନ ତ୍ରିଯାମା ରେ । ୫ ।। ୮୦ ।

# ଶ୍ରୀକୃଷ୍ଣ ।

## ମାଳସା ।

ଈତର ସରସ ବାଣୀ ଚିତ୍ତରେ ତୋଷ ଆଣି ।
ନତ ନ କର ଭ୍ରୂ ବଙ୍କ କୋପରେ ଶ୍ରୀମୁଖେନ୍ଦୁ ।
କୃତ ସୁକୃତ ଈଶ୍ୱରେ ତୃଟା ତନୁ ସ୍ପର୍ଶ ବେଳେ ।
ଅତନୁ ଶର ନ ମାର କାତରେ ମାତ ଫେଣ । ୯୧ ।

## ରାଗ ଢଣ୍ଟୋରବା । ଆଡ଼ତାଳ ।

ସଙ୍ଗୀନ ରେ ରସେରଙ୍ଗୀନ ରେ । ଦୋଷ କ୍ଷମାକର ଜବବନ୍ଧୁ ଭୂଷନା ରେ । ପଦ ।

ଯା କର ତା କର । ତୋ ଦେ କଙ୍କର । ଋଙ୍କରତନ ମୃଗାଙ୍କଲପନା ରେ । ଶଙ୍କରବନ୍ଦ୍ୟ ନିଃଶଙ୍କରେ ମାରୁଚ । ଅଙ୍କ ପର୍ଯ୍ୟଙ୍କ ମୋ ମଣ୍ଡୁକନା ରେ । ୧ ।

ଯୋଡ଼ି ପାଣି, ଜଟାଭୃତ ରାମାମଣି । ଧରଣୀରେ ନଖ ଗାର ଲେଖନା ରେ । କଣିଲ ଜନ ମୁଁ । ତୋର ଅଜନମୁଁ । ତୋଳ ତଳ ଋରୁବେଣୀ ଲେଷ୍ଟାନା ରେ । ୨ ।

ମାନସରୁ ମାନ ସରୁ ସ୍ମରଣରୁ ରଖ ନୂଆ ସରୁ ନୀଳବସନାରେ । ଜବନାପସରୁ ପୀୟୂଷହାସରୁ ଲବ ତ୍ରସରୁ ଖଞ୍ଜନନୟନାରେ । ୩ ।

ଗୋକୁଳ କୁଳଜା । ପଟ୍ଟେଷଦ ରଜା । ନ କଲେ କରୁଣା ଜାଣ ତୋ ନାରେ । ରାଧେ ରାଧେ ବୋଲି । ତୋ ସରସ ସକଳରେ ଝାସିବାର ଶୁଣୁ ସିନାରେ । ୪ ।

ଅବନତ ହୋଇ । ଧରୁ ପଦ ଦୁଇ । ରାଧା ପ୍ରସନ୍ନତା କଣ କଳନାରେ । ଗଲେ ନିଜ ନିଜ । କୁଞ୍ଜେ ଆଳବ୍ରଜ । ଗୋପାଳ କୃଷ୍ଣ କହେ ସେ ଭାବନାରେ । ୫ । ୯୧ ।

ବଂଶସ୍ଥ ବୃତ୍ତ ।

ସ୍ମିତାବଲୋକେ ମନ ଜାଣି କାନ୍ତରେ ।
ମିଳନ୍ତେ ସମସ୍ତେ ରହିଲେ ଲତାନ୍ତରେ ।
ରହେ ତ ରାଧା ବନମାଳି ସଙ୍ଗରେ ।
ହସନ୍ତେ ସୁସ୍ୱଭାବେ ରସି କେଳି ରଙ୍ଗରେ । ୯୨ ।

ରାଗ ଇମନ କଲ୍ୟାଣୀ । ତାଳ ଝୁଲୁଆ ।

ନବଘନବରନ ଶ୍ୟାମ । ବାମନୟନା କୁଞ୍ଜେ ଯୁଗଳରୂପ ମୁର କେଳନ୍ତ ଦ୍ୟୁତିକ ଛବିରେ ଗଞ୍ଜେ । ପଦ ।

ବାମ କର ନ ପାର । ମଦନ ସିବାରୁ ଫେର । ଦେଖି ଆଚମ୍ବିତେ । ବିଜୁଳି ସ୍ଥକତେ । ରହେ କି ଜଳଦପୁଞ୍ଜେ । ୧ ।

ଚୁମ୍ବିକୁ ପ୍ରତିବିମ୍ବେ ସୁହିବାରୁ ଅବଲମ୍ବେ । ମାଲକମଳ ଜଲଚେ ରହିଲି ବିମଳ ହେମ କଞ୍ଜେ । ୨ ।

କଣୋଗ୍ର କି ଶରେ ଗୃହୁର । ପୁଣି ଅନ୍ତଶୟୁ ମାଧୁର୍ଯ୍ୟ । ପରସ୍ପରେ ଜାତ ହୋଇବା ଭାବ । ଉଦ୍ଧବ ମନକୁ ରଞ୍ଜେ । ୩ ।

ଚନ୍ଦ୍ର ଏହି କେଳକ । ହରିବାକୁ ଦିନ ରାତିକ । ଦେବୁନାଭ ଚିତ୍ତ ନରତ ପାମଳାର୍ଜ୍ଜୁନଭଞ୍ଜେ । ୪ । ୮୨ ।

ଶିଖରଣୀ ବୃତ୍ତ ।

କବା ଶୁଦ୍ଧସ୍ୱର୍ଣ୍ଣେ ମରକତ-ମଣୀ ଶୋଭନ କରେ ।
କବା କାଳମ୍ବନ୍ଧେ କନକଲତିକା ମାଳୀ ରହିଲି ।
କବା କ୍ରୀଡ଼ାକୁଞ୍ଜେ ଶୁକ ପିକ ରଖେ କାମ କୁତୁକେ ।
କବା ଶୋଭା ରାଜେ ନବ ଜଳଧରେ ଧୀର ବିଜୁଳି ।

ମନ୍ଦାକ୍ରାନ୍ତା ।

ରାଧା ସାଧାରଣବଚନରେ ସାଦରେ ପ୍ରେମପୂର୍ଣ୍ଣେ ।
କୁଞ୍ଜାଗାରେ ମଦନରସରେ ମାତିଲେ କେଳିଭାବେ ।

ନାନା କ୍ରୀଡ଼ା କରନ୍ତି ସୁମନେ ମୋହୁ ଅତ୍ୟନ୍ତ ରାଗେ
ଶୁଭପ୍ରାନ୍ତେ ଶପୁନ ବନ୍ଧାଲେ ଭୁସ୍ତକରେ ପୁଷ୍ପତଳ୍ପେ । ୯୪ ।

ରାଗ କଲ୍ୟାଣୀ । ତାଳ ଝୁଲୁଆ ।

ଗୋପୀନାଥାୟ ମଙ୍ଗଳଂ ଗୋ ଗୋଷ୍ଠବାଳ । ପାପ ମୋଚନାୟ ମଙ୍ଗଳଂ । ପାପନକର ଖଣ୍ଡନାୟ । ପାପ ସହ୍ମଦ ମଣ୍ଡନାୟ । ଆପଦଚୟ ମୋକ୍ଷଣାୟ । ଭୂପଚୟ ରକ୍ଷଣାୟ ଗୋ । ୧ ।

ନନ୍ଦବାଳାୟ ମଙ୍ଗଳଂ । ଆନନ୍ଦକନ୍ଦମନ୍ଦହାସାୟ ମଙ୍ଗଳଂ । ଚନ୍ଦନ-ବନ୍ଦୁ-ଭୂଷତାଙ୍ଗ । ଇନ୍ଦୁବଦନୀବୃନ୍ଦସଙ୍ଗ । ମନ୍ଦରଧର ଲୋକପାଳ । କୁନ୍ଦରଦନ କାନ୍ତଲୋଳ ଗୋ । ୨ ।

କେଶିନାଶାୟ ମଙ୍ଗଳଂ । ସୁଭକ୍ତ-ବଂଶ । ପାଳ ଲୋଳାୟ ମଙ୍ଗଳଂ । ବାସବାଦ୍ଧ ଶେଷ ବ୍ୟୋମ । କେଶଭଜିତ ଦିବ୍ୟନାମ । ଦୋଷ ରହିତ ମୋକ୍ଷଧାମ । ଦାସ ନକର ପୂର୍ଣ୍ଣକାମ ଗୋ । ୩ ।

କଂସନାଶାୟ ମଙ୍ଗଳଂ । ଅଦୋଷଦର୍ଶୀ । ବଂଶୀବାଦନାୟ ମଙ୍ଗଳଂ । ନାଶିତ ଭବବନ୍ଧ ମୋହ ପୋଷିତ ସୁରମୌନିବହା ଭୂଷିତ ଶିଖିଚନ୍ଦ୍ର ନଚୟ । ତୋଷିତ କବିଚନ୍ଦ୍ର ହୃଦୟ ଗୋ । ୪ ।

## ସମାପ୍ତ

ଧର୍ମଗ୍ରନ୍ଥ ଷ୍ଟୋର୍ସ, କଟକ-୨